ଭକ୍ତକବି ୰ ଦୀନକୃଷ୍ଣ ଦାସଙ୍କ ରଚିତ

# ଗୁ ଣ ସା ଗ ର



ପ୍ରକାଶକ—ଓଡ଼ିଶା କୋହିନୂର ପ୍ରେସ ପ୍ରୋପ୍ରାଇଟର
ମୂଲ୍ୟ ଟ ୦ ୳୶ (ନୂଆ ୬୨ ପଇସା) ଦ୍ୱିତୀୟ ସଂସ୍କରଣ—୧୯୬୦

# ଗୁଣ ସାଗର



## ପ୍ରଥମ ଛାନ୍ଦ

ଶ୍ରୀକୃଷ୍ଣ ଚରିତ ତମ-ସୁଧାକର ବିସ୍ତାର ଜଗତ ମୁକ୍ତେ ।
ଶ୍ରବଣେ ଶୁଣନ୍ତେ କଳୁଷନାଶନ ଭବ-ଦୁରିତହିଁ ଗଞ୍ଜେ ।
ଅମୃତପୟୋଧି ବ୍ରହ୍ମଜ୍ଞାନ ସାଧି ତ୍ରିଭୁବନେ ଦିବ୍ୟସାର ।
ଭାଗବତମତ କୃଷ୍ଣଦାସ ଭଣଇ ଉଦ୍ଧବ ଗୋପୀ ବିସ୍ତର ।
କହନ୍ତି ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଗୁହ୍ୟ ଭକତ ଲକ୍ଷଣ ଚିହ୍ନି ।
ଆଜ ତୁମ୍ଭେ ଗୋପପୁରକୁ ଚଳିବ ଆମ୍ଭର ବାରତା ଘେନି ।
ସେ ଗୋପପାଟଣା ଅପୂର୍ବ ଘଟଣା ମନୁଷ୍ୟେ ନିର୍ମାଣ ନୋହୁ ।
ଅମରେ ବୈକୁଣ୍ଠ ମର୍ତ୍ତ୍ୟେ ଅବତୀର୍ଣ୍ଣ ଦେଖିଲେ ହୋଇବ ମୋହ
ରାଧା ଆଦିକରି ଯେତେ ଗୋପ ନାରୀ ଜନମି ଅଛନ୍ତି ଗୋପେ ।
ପୂର୍ବେ ତପେ ସେ ଆମ୍ଭର ଭକତ ବ୍ରଜକାମିନୀ ରୂପେ ।
ଦେଖିବାରେ ଆମ୍ଭେ ଗୋପପୁରେ ବଢ଼ିଲୁଁ ମଥୁରା ରହିଲୁଁ ଆସି ।
ଆମ୍ଭର ଶ୍ରୀମୁଖ ଦର୍ଶନ ନ ପାଇ ଭାଳୁଛନ୍ତି ଗୋପୀ ବସି ।
ଏବେ ତୁମ୍ଭେ ଆମ୍ଭ ଆଜ୍ଞା ଘେନ ଯାଇ ଗୋପପୁରେ ଦିନେ ରହ
ଜଣେ ଜଣେ କରି ପ୍ରବୋଧି ଗୋପୀଙ୍କି ଜ୍ଞାନପଥ ତାଙ୍କୁ କହ ।
ଶ୍ରୀକୃଷ୍ଣ ବଚନ ଶୁଣିଣ ଉଦ୍ଧବ ଦିବ୍ୟରଥ ସଜ କଲା ।
ରଜନୀ ପ୍ରଭାତେ ଜୟ ଶଙ୍ଖ ବାଇ ଗୋପପାଟଣାକୁ ଗଲା ।
ସେ ଦିନ ଗୋପରେ ସବୁରି ଆନନ୍ଦ ଗାଈ ବଢାଇବା ଛନ୍ଦ ।
ଗୋପପୁର ମଧ୍ୟେ ଉତ୍ସବ ଆନନ୍ଦ ଯାହା ଭିଆଇଛନ୍ତି ନନ୍ଦ ।
ଏମନ୍ତ ସମୟେ ଉଦ୍ଧବ ଯାଇଣ ଗୋପରେ ପ୍ରବେଶ ହୋଇ ।
ନନ୍ଦ ସିଂହଦ୍ୱାରେ ରଥୁଁ ଓହ୍ଲାଇଣ ଭକତମାନଙ୍କୁ ଚାହିଁ ।
ଦେଖି ଯଶୋବନ୍ତୀ ପାଦ ପଖାଳନ୍ତି ଆନନ୍ଦେ ଯୁବତୀ ସଙ୍ଗି ।
ବସିବାକୁ ଦିବ୍ୟ ଆସନ ଦେଇଣ ବାରତା ପୁଚ୍ଛନ୍ତି ବସି ।

ଯଶୋଦା ବୋଇଲେ ଶୁଣ ହେ ଉଦ୍ଧବ କଥା ଏ କହିବା କେତେ
ବେନି ପୁତ୍ରେ ଯାଇ ମଥୁରା ରହିଲେ ଅନାଥା କରିଣ ମୋତେ ।
ଧନୁର ଉତ୍ସବ ଯାତ୍ରା କରି କଂସ ଅକ୍ରୂରକୁ ପେଷିଥିଲା ।
ସେ ଆସି ଗୋପରେ ହାଲୋଳ ଲଗାଇ ରାମକୃଷ୍ଣ ଘେନଗଲା ।
ସେ ଦିନୁ ତାହାଙ୍କ ଶ୍ରୀମୁଖ ନ ଦେଖି ଯତେ ସୁସ୍ଥ ନାହିଁ ମନ ।
କାହିଁଗଲେ ମୋର ଦୁଃଖୀର ସଞ୍ଚାଳ କୃପଣ ଯେସନ ଧନ ।
ଅନ୍ଧର ଲଉଡ଼ି ହୁଦପ୍ପ ପଦକ ଦରିଦ୍ର ଲୋକଙ୍କ ବିତ୍ତ
ତାଙ୍କ ବିନୁ ମୁଁ ଯେ ଅନାଥା ହୋଇଲି କେମନ୍ତେ ଧରିବି ଚିତ୍ତ ।
ଉଦ୍ଧବ କହିଲେ ଶୋକ ପରିହର କହୁଛି ସବୁ ବାରତା ।
ସାବଧାନ ହୋଇ ଶୁଣିମା ଗୋସାଇଁ ଠାକୁରଙ୍କ ଜନମାତା ।
ନରାକାର ଜ୍ୟୋତି ମର୍ତ୍ତ୍ୟରେ ଉତ୍ପୁତ୍ର ବେନି ମୂର୍ତ୍ତି ହରିହର ।
ଅଶେଷ ବ୍ରହ୍ମାଣ୍ଡେ ଯେ ପ୍ରଭୁ ଠାକୁର ତୁମ୍ଭେ କପାଁ ବୋଲ ମୋର ।
ସବୁରି ଜୀବନ ସବୁଙ୍କର ଧନ ସବୁରି ଜୀବନ ସେହି ।
ସଂସାର ଭିତରେ ଯେତେ ଜୀବ ଜନ୍ତୁ ତାଙ୍କ ବିନୁ ନାହିଁ କେହି
ଏବେ ତୁମ୍ଭେ ତାଙ୍କୁ ଯେମନ୍ତେ ଭେଟିବ କହିବା ତାହାଁର ଗତି ।
ମନ ସ୍ଥିର କର ରଙ୍ଗ ଅଧରଙ୍କୁ ଦେଖିଥିବ ଦିନରାତି ।
ଭାବକୁ ନିକଟେ ପ୍ରସନ୍ନ ହୁଅନ୍ତି ଭବବିନୋଦିଆ ନାମ ।
ଭକତଙ୍କ ଭେଳା ଶ୍ୱେତପଦ୍ମ ଡୋଳା ନବୀନ ସୁନ୍ଦର ଶ୍ୟାମ ।
ଯଶୋଦା ସଙ୍ଗତେ ବିସ୍ତର କରନ୍ତେ ଜାଣିଲେ ବ୍ରଜବାସୀ ।
ଏକ ସଖୀ ଆଗେ ଅନେକ କହୁଛି ଉଦ୍ଧବ ଅଛନ୍ତି ଆସି ।
ଚାଲ ଗୋ ସମସ୍ତେ ଆଗେ ଉଦ୍ଧବଙ୍କୁ କହିବା ଯାଇଣ ସେବା ।
ଏତେକାଳ ଅମ୍ଭ ଦଶା ପାଲଟିଲା ଶ୍ରୀକୃଷ୍ଣ ଆସିବେ ଅବା ।
ଶୁଣି ବ୍ରଜନାରୀ ସକଳ ପାଶୋରି ଶୁଙ୍ଗାରଣ ଲୁଡ଼ୁ ମୁଁ ଆଶ ।
ଏକରୁଣ୍ଡ ହୋଇ ସର୍ବ ଗୋପଜନା ମିଳିଲେ ଉଦ୍ଧବ ପାଶ ।
କୋମଳ ହୋଇ ସମସ୍ତେହେଁ ଯାଇଁ ଭକତଭାବ ଯୁଗତେ ।
କିରେ କରଯୋଡ଼ି ଭକତଙ୍କୁ ଦେଖି କାନ୍ଦନ୍ତି ଅକୁଳ ଚିତ୍ତେ ।
ପ୍ରଭୁ ଗୁଣ ଶୁଣି ବ୍ରଜ ଯୁବତୀ ସମସ୍ତେ କରନ୍ତି କୋହ ।

ଏକ ସଖୀ ମୁଖୁଁ ଅନେକ ଗୁଆଳ ଅଞ୍ଚଳେ ପୋଛନ୍ତି ଲୁହ ।
ହା ହା କୃଷ୍ଣ ବୋଲି ରୋଦନ କରଇ ଉଦ୍ଧବ ଚରଣେ ପଡ଼ି ।
ଗୋପୀମାନଙ୍କର ଭକତି ଦେଖିଣ ଉଦ୍ଧବହିଁ କରଯୋଡ଼ି ।
ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ ଏ ତୁମ୍ଭ ନ୍ୟାୟଇଁ ଭଲ ।
ତୁମ୍ଭେ ଆମ୍ଭଙ୍କୁ ଯେ ଉକତି ବୋଇଲ ଏତେକ କର୍ମ କପାଳ ।
ଆମ୍ଭେ ଗୋପନାରୀ ବନଜନ୍ତୁ ସରି ଅଜ୍ଞାନ ଆଗରେ ଥାଉଁ ।
ଦଧି ମୁକ୍ତେ ଘେନି ବ୍ରାହ୍ମଣ ଗୃହ୍ୟାଳ ଏକୁଦ୍ୱାରେ କୂଳପାଉଁ ।
ତୁମ୍ଭେ ଯେ ପ୍ରଭୁଙ୍କ ଅଙ୍ଗସଙ୍ଗ ଲୋକ ସନ୍ଥ ଭକତ ସୁମତି ।
ବଡ଼ ହୋଇ କ୍ଷମା ଯାନଙ୍କୁ ଓଳଗ ଏ ତୁମ୍ଭର କେଉଁ ରୀତି ॥
ଉଦ୍ଧବ ବୋଇଲେ ତୁମ୍ଭ ମୁଖ ଦେଖି ଗଲା ମୋର ସର୍ବଦୁଃଖ ।
ଭକ୍ତକୁ ଭକ୍ତ ଯେ ଭେଟାଭେଟି ହେଲେ ହୁଅଇ ଯେସନ୍ତେ ସୁଖ
ଯେଉଁମାନେ କୃଷ୍ଣ କଥାରେ ନ ଥାନ୍ତି ସେ ପ୍ରାଣୀମାନେଟି ଜଡ଼
ତୁମ୍ଭମାନଙ୍କର ଭକତିଭାବକୁ ମୁଁ ସ୍ତୁତି କରଇ ବଡ଼ ।
ଯେତେବେଳେ ଧ୍ରୁବ ନଉବୃତ୍ତି ଦେଲେ ଶ୍ରୀକୃଷ୍ଣ ତରତଠାକୁ ।
ମାରକଣ୍ଡ ଋଷି ସରି ନୋହିବେଟି ସାତବରଷ ପୁଅକୁ ।
ଗୋପୀ ବୋଇଲେ, ତାଙ୍କ ମହନ୍ତ ଜାଣିମା ଆମ୍ଭ ମନେ ପ୍ରତେ ନାହିଁ
ତୁମ୍ଭେ ଯେ ମହତ ଠାକୁରଙ୍କ ହିତ ସମସ୍ତ କହ ଗୋସାଇଁ ॥
ଉଦ୍ଧବ ବୋଇଲେ ଶୋକ ତେଜ ତୁମ୍ଭେ ଏକମୁଖ ହୋଇ ବସ
ଆମ୍ଭଠାରୁ ଯେତେବେ ସେ କଥା ଶୁଣିବ ଧରମ ଧରଣ ଆସ ॥
ଧନୁମାସ ଅନ୍ତେ ମକର ପଶନ୍ତେ ବଡ଼ ଏକାଦଶୀ ଦିନ ।
ସର୍ବ ଋଷିମାନେ ଗଙ୍ଗାତୀରରେ ପାଇ ପ୍ରଭାତରେ କଲେ ସ୍ନାନ ।
ଅଙ୍ଗିରା ଅଗସ୍ତି ଭୃଗୁ ପରାଶର ନାରଦ ଯେ ମହାମୁନି ।
ସନକ ମାର୍କଣ୍ଡ ବ୍ୟାସ ଶୁକ ସଙ୍ଗେ ଅଷ୍ଟାବକ୍ର ଆଦି ଘେନି ॥
ଧ୍ରୁବ ଆଦିକରି ବିଶ୍ୱାମିତ୍ର ମୁନି ସମସ୍ତେ ଅଛନ୍ତି ବସି ।
ଷଟକର୍ମ ସାରି ମୁକତିମଣ୍ଡପେ ଗୋଷ୍ଠୀ କଲେ ସର୍ବ ଋଷି ।
ଅଗସ୍ତି ବୋଇଲେ, ଅହେ ପରାଶର ! ଶ୍ରୀକୃଷ୍ଣ ମହିମା କହ ।
ଆମ୍ଭମାନଙ୍କର ଦୁଷ୍କୃତ ହରିବ ତୁମ୍ଭେହିଁ ମୁକତି ଦିଅ ।

ସେ ତାଙ୍କୁ କହିଲେ, ଏତେ ଭାଗ୍ୟ କାହିଁ କହିବ ଶ୍ରୀକୃଷ୍ଣ ଗାଥା।
ମୁହିଁ ଶୁର ବେଳେ ଉଚ୍ଚାର ନ ପାରେ ଶ୍ରୀବାସୁଦେବଙ୍କ କଥା ॥
ପରାଶର ମୁଖୁଁ ଶୁଣିଣ ଅଗସ୍ତି ବ୍ୟାସଙ୍କ ମୁଖକୁ ଚାହିଁ ।
ବୋଇଲେ ଶ୍ରୀକୃଷ୍ଣ ଚରିତ ଗୋସାଇଁ ତୁମ୍ଭେ ପାରିବ କି କହି ॥
ବ୍ୟାସ କହିଲେ ମୁଁ କୋଟି କୋଟି ଶ୍ଳୋକ ଅନେକ ଶେ ରଚନା କଲି
ଆଜଯାଏ ତାଙ୍କ ଅନ୍ତ ନ ପାଇଲି ବୃଥାରେ ଗର୍ଜି ହୋଇଲି ॥
ବ୍ୟାସ ମହାମୁନି ବଚନ ଶୁଣିଣ ଅଗସ୍ତି ପାଇଲେ ବ୍ୟଥା ।
ଶୁକମୁନି ମୁଖ ଚାହିଁଣ ବୋଇଲେ ତୁମ୍ଭେ କହ କୃଷ୍ଣ କଥା ॥
ଶୁକ କହିଲେ ସେ ଶ୍ରୀକୃଷ୍ଣ ଚରିତ ପିତା ନ ଜାଣିଲେ ଯହିଁ ।
ତାହାଙ୍କ ବୀଜରୁ ଜାତ ହୋଇ କରି ମୋହର ଭରସା କାହିଁ ॥
ଶୁକ ମୁନି ମୁଖୁଁ ଶୁଣିଣ ଅଗସ୍ତି ମନେ ମନେ ଭଲା ହୋଇ ।
ନାରଦ ମୁଖକୁ ଚାହିଁଣ ବୋଇଲେ ତୁମ୍ଭେ ପାରିବ କି କହି ॥
ନାରଦ ବୋଇଲେ ଯୋଗାଧିପୁରୁଷ ନାମ ଯାର ମାୟାଧର ।
ମୁହିଁ ଶୁର କାହିଁ ସେ କଥା କହିବି ବ୍ରହ୍ମାଙ୍କୁ ତ ଅଗୋଚର ॥
ଜିନପୁରେ ଯହିଁ ଯେତେକ ଦେଖଇ ତାଙ୍କ ଚରିତ ଅଲେଖ ।
ସିଦ୍ଧମାନେ ଯାଙ୍କ ଭେଟ ନ ପାଆନ୍ତି ମୁଁ ଶୁର ବା କେଉଁ ଲୋକ ।
ନାରଦ ବଚନେ ଅଗସ୍ତି ବିନସ୍ତେ ଅଙ୍ଗିରାଙ୍କ ମୁଖ ଚାହିଁ ।
ଭାଷିଲେ ଶ୍ରୀକୃଷ୍ଣ ଚରିତ ଗୋସାଇଁ ତୁମ୍ଭେ ପାରିବ କି କହି ?
ଅଙ୍ଗିରା ବୋଇଲେ ଶୁଣିମା ଅଗସ୍ତି ବେଳେ ମୁଁ ଏମନ୍ତ କଲି ।
ଚାରିଆଡ଼େ ତାଙ୍କ ମହିମା ଖୋଜିଣ ମହାଦେବଠାକୁ ଗଲି ॥
ଅନେକ ପ୍ରକାରେ ଚରଣେ ବିନତୀ ପଚାରିଲି ଶିବ ତୁଲେ ।
ସେହି ବୋଇଲେ ମୁଁ ଯୋଗ ସାଧୁଅଛି ଅନ୍ତ ପାଇ ନାହିଁ ଭଲେ
ଅଙ୍ଗିରା ବଚନ ଶୁଣିଣ ଅଗସ୍ତି ମାର୍କଣ୍ଡ ମୁଖ ଚାହିଁ ।
ବୋଇଲେ ଶ୍ରୀକୃଷ୍ଣ ଚରିତ ଗୋସାଇଁ ତୁମ୍ଭେ ପାରିବ କି କହି ?
ବେଦବିଦ୍ୟା ତୁମ୍ଭେ ଅନେକ ସାଧିଛ ବହୁତ କାଳର ଯତି ।
ତୁମ୍ଭଠାରୁ ଅମ୍ଭେ ପ୍ରଭୁକଥା ଶୁଣି ସର୍ବେ ଲଭିବୁଁ ମୁକତି ॥
ଅଗସ୍ତି ବଚନେ ମାର୍କଣ୍ଡ ମୁନି ବୋଇଲେ ଶୁଣ ହେ ଋଷି ।

ଅମ୍ଭେ ଯେ ଶ୍ରୀକୃଷ୍ଣ କଥାରେ ଶ୍ରବଣ ଲଗାଏ ନ ପାରୁଁ ପଶି ।
ଯୁଗ ଶେଷକାଳେ ଭାସି ଯାଉଥିଲୁ ଗମ୍ଭୀର ସମୁଦ୍ରେ ପଡ଼ି ।
'ପ୍ରଭୋ ! ଶାହିକର' ବୋଲି ନ କହିଲେ ନିଶ୍ଚୟ ମରନ୍ତୁ ବୁଡ଼ି ।
ଆମ୍ଭ ମନ କଥା ହୃଦୟୁ ବାରତା ଜାଣିଲେ ସାରଙ୍ଗପାଣି ।
'ପ୍ରଭୋ ! ଶାହିକର' କହିବା ମାତ୍ରକେ ଗର୍ଭେ ସଂହରିଲେ ଆଣି ।
କେବଳ ମାତ୍ର ମୁଁ ଗର୍ଭରେ ପଶିଲି ଅନ୍ୟ ନ ଜାଣଇ କିଛି ।
ଦେଖିଲି ଶ୍ରୀକୃଷ୍ଣ ଉଦର ଭିତରେ ଅଶେଷ ବ୍ରହ୍ମାଣ୍ଡ ଅଛି ।
କୋଟି କୋଟି ମେରୁ କୋଟି ପୃଥ୍ୱୀ କେଉଁଅଣ୍ଡେ ଅଛି କେତେ
କେତେ ଯୁଗପାଏ ଗର୍ଭରେ ବୁଲିଲି କଳନା ନ ଗଲା ମୋତେ ।
ବ୍ୟାସ ମହାପତି ବ୍ରହ୍ମରୁ ଉତ୍ପତ୍ତି ଅନ୍ତ ନ ପାଇଲେ ଯହିଁ ।
ମୁହିଁ ହୀନ ଛାର ତାହାଙ୍କ ମହିମା ବିଶେଷ କହିବି କାହିଁ ।
ଯେମାନେ ତାହାଙ୍କ ଭକତ ଅଟନ୍ତି ଶୁଣ ତୁମ୍ଭେ ସର୍ବ ଋଷି ।
ମହାସୁଖମୟ ଯୋଗାଧିପୁରୁଷ ସେହିଠାରେ ଥାନ୍ତି ବସି ।
ଶ୍ରୀକୃଷ୍ଣ ଚରିତ ଉଚ୍ଚାର କରିବେ କେହୁତ ଯୋଗ୍ୟ ନୋହିଲେ ।
ଧ୍ରୁବେ ସ୍ତୁହିଁ ବୋଲେ ଠାକୁରଙ୍କ କଥା ଏହି କହୁଙ୍କେ କହିଲେ ।
ଏତେ ବୋଲି ମୁନି ଆସନ ଉପେକ୍ଷି ଧଇଲେ ବାଳକ ପାଦ ।
ଦେଖି ମୁନିମାନେ ଚକିତ ହୋଇଲେ ମନେ କଲେ ମହାଖେଦ ।
ସର୍ବ ଋଷିମାନେ ତାହାଙ୍କୁ କହିଲେ ନିଶ୍ଚୟ କଲ ଅନୀତି ।
କଅଁଳାପୁଅର ଚରଣ ଧଇଲ ଏ ତୁମ୍ଭର କେଉଁ ରୀତି ।
ସାତ ବରଷର ବାଳକ ଶିଶୁଏ ତୁମ୍ଭେ ସାଠକଳ୍ପ ମୁନି ।
ଏଡ଼େ ଯତି ହୋଇ ପାଦ ଯେ ଧଇଲ ପୁଣ୍ୟର ହୋଇଲା ହାନି ।
ମୁନି ବୋଇଲେ ଏ ବାଳକ ନୁହନ୍ତି ବ୍ରହ୍ମଜ୍ଞାନେ ବଡ ଦୃଢ ।
ଜନ୍ମକାଳୁ ଲେଖି ଦେଖିଲି ମୋଠାରୁ ବେଦବର୍ଷ ଅଟେ ବଡ଼ ।
ଋଷି ବୋଇଲେ ତ କେମନ୍ତେ ଜାଣିବା ଆମ୍ଭ ମନେ ପ୍ରତେନାହିଁ
ଏହାଙ୍କ ଆଦ୍ୟାନ୍ତ ବାରତା କେମନ୍ତେ କାହୁଁ ଜାଣିଲ ଗୋସାଇଁ
ମୁନି ବୋଇଲେ ଏ ଯେଉଁ ସମୟରେ ମାତାଙ୍କ ଗର୍ଭରେ ଥିଲେ
ଜନନୀ ଉଦରେ ଥାଇ ଧ୍ରୁବ ଯତି କୃଷ୍ଣନାମ ଅଭ୍ୟାସ କଲେ ।

ହୃତତର ହୋଇ କୃଷ୍ଣଙ୍କୁ ଭଜିଲେ କ୍ଷଣେ ନ ଛାଡ଼ନ୍ତି ଚିତ୍ତେ ।
ରଜନୀ ଦିବସେ ଶ୍ରୀକୃଷ୍ଣ ଚରିତ ଉଚ୍ଚାରନ୍ତି ନିତ୍ୟେ ନିତ୍ୟେ ।
ତଦନ୍ତରେ ପୁଣି ପ୍ରସବ ସମୟେ ଜନନୀ କଲେ ଜନମ ।
ଏତେ ଯତ୍ନ ଏ ଯେ ଗର୍ଭୁ ପଡିଲେହେଁ ଘୋଷୁଥାନ୍ତି କୃଷ୍ଣନାମ ।
ସେହିଦିନୁ ପୂର୍ବବାସନା ଯୋଗେଣ ବିଷୟ ପଥେ ନ ଗଲେ ।
ସପ୍ତମ ବରଷ ସମ୍ପୂର୍ଣ୍ଣ ହୁଅନ୍ତେ କୃଷ୍ଣ ନାମ ଆଶ୍ରେ କଲେ ।
ଆମ୍ଭେମାନେ ଯେଉ ଅନେକ କାଳରୁ ଶ୍ରୀକୃଷ୍ଣ ସେବକ ନୋହୁଁ ।
ଦାଣ୍ଡେକରି ନାମ ନିରୋଳ ଧରିଲେ ଧ୍ରୁବସଙ୍ଗେ ସରି କାହୁଁ ।
କ୍ଷଣେ ଦଣ୍ଡେ କରି ଭଜନ କରନ୍ତେ ତେବେ ସେ ପୂର୍ଣ୍ଣ ନୋହିଲା
ସାତକଳ୍ପ ପାକ ଲେଖି ଲେଖି ସର୍ବେ ପାଞ୍ଚବରଷ ହୋଇଲା ।
ତେଣୁକରି ଧ୍ରୁବ ବେନି ବରଷର ମୋଠାରୁ ଅଟନ୍ତି ଉଚ୍ଚ ।
ତୁମ୍ଭେ ମହାପତି ବିବେକୀ ପୁରୁଷ ବିସ୍ତରି ଆମ୍ଭଙ୍କୁ ବାଛ ।
ଶୁଣି ସର୍ବଋଷି ସାନନ୍ଦ ହୋଇଲେ ଛାଡ଼ିଲେ ହୃଦୟ ବ୍ୟଥା ।
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ ପ୍ରଭୁଙ୍କ ସେବକ କଥା ।
ତୁମ୍ଭେ ଯେ କହିଲ ସାନକୁ କିମ୍ପାଇଁ ଓଲଟି ହୋଇଲ ପୁଣ ।
ସାନଲୋକଙ୍କର ଏମନ୍ତ ମହିମା ଆମ୍ଭଠାରୁ ତୁମ୍ଭେ ଶୁଣ ।
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ! ତୁମ୍ଭେ ଯାହା କହୁଅଛ
ଧ୍ରୁବ ମହାପତି ପ୍ରତ୍ୟକ୍ଷେ ଈଶ୍ୱର ଆମ୍ଭେ କାହିଁ ତାଙ୍କୁ ଲକ୍ଷ୍ୟ ।
ଦେଖିଲଟିକି ଶ୍ରୀମାର୍କଣ୍ଡେୟ ମୁନି ଚରଣ ଧରିଲେ ପାଇଁ ।
ଆମ୍ଭେ ଛାର ହୀନ ପାମରି ବୁଆଳୀ ଧ୍ରୁବ ସଙ୍ଗେ ସରି କାହିଁ ।
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ ! ଏ କଥାମାନ ଗୋ ଛାଡ
ମୋର ବିସ୍ମରକୁ ଏମନ୍ତ ଦିଶଇ ଧ୍ରୁବଠାରୁ ତୁମ୍ଭେ ବଡ ।
ପ୍ରଭୁଙ୍କର ଅଙ୍ଗସଙ୍ଗିନୀ ହୋଇଲ ତେଣୁକରି ମହାଜ୍ଞାନୀ ।
ଷୋଡ଼ଶସହସ୍ର ମୁନି ଜନ୍ମ ହେଲ ପୂର୍ବର ବାସନା ଯୋଗେ ।
ଗୋପୀଏ ବୋଇଲେ କେମନ୍ତ ଜାଣିବା ଆମ୍ଭମନେ ପ୍ରତେ ନାହିଁ
ତୁମ୍ଭେ ଯେଉଁକଥା ସ୍ଥାପନ କଲ ସଂକ୍ଷେପି କହ ଗୋସାଇଁ ।
ଉଦ୍ଧବ ବୋଇଲେ ଆମ୍ଭେ ତା ନ ଜାଣୁ ପୁରାଣରେ ଅଛି ଯଥା ।

ତେଣୁ ତୁମ୍ଭ ଆଗେ ପ୍ରକାଶ କରୁଛୁଁ ତୁମ୍ଭ ପୂର୍ବଜନ୍ମ କଥା ।
ଯେଉଁଦିନ ତୁମ୍ଭେ ବ୍ରହ୍ମାଙ୍କ ନନ୍ଦନ ହୋଇଥିଲ ବ୍ରହ୍ମଚାରୀ ।
ଦୃଢ଼ତର ହୋଇ ମନସ୍ଥିର କର କହିବା କିଛି ବିସ୍ତାରି ।
ସତ୍ୟଯୁଗ ଅନ୍ତେ ତ୍ରେତା ପ୍ରବେଶନ୍ତେ ବସୁ ନାମେ ଏକ ଧାତା
ଷୋଡ଼ଶସହସ୍ର ମୁନି ଜନ୍ମ କଲେ ଏକେ ଏକେ ବଳବନ୍ତା ।
ଯେ ଦିବସେ ତୁମ୍ଭେ ଧର୍ମ କଥା ଶୁଣି ଜ୍ଞାନ ସାଧିବାକୁ ଗଲ ।
ମୁକତି ହୋଇବା ନିମିତ୍ତରେ ତୁମ୍ଭେ ଈଶ୍ୱରଙ୍କୁ ସେବା କଲ ।
ଈଶ୍ୱରଙ୍କ ପାଦେ ମନ ଜ୍ଞାନ ଦେଇ ଛାଡ଼ିଲ ସଂସାର ଆଶ ।
ଗଙ୍ଗା କୂଳେ ବସି ତପ କଲ ତୁମ୍ଭେ ନବେ ସହସ୍ର ବରଷ ।
ଜ୍ଞାନ ଅନଳରେ ପ୍ରକୃତି ବନ୍ଧିଲ ଇନ୍ଦ୍ରିୟମାନଙ୍କୁ ମାରି ।
ଅନ୍ନ ପାଣି କିଛି ଭକ୍ଷଣ ନ କଲ ପବନ ଆହାର କରି ।
ଦୃଢ଼ ବ୍ରତ କରି ଚକ୍ଷୁମାନ ଖୋଲି ଈଶ୍ୱରଙ୍କୁ କଲ ପୂଜା ।
କୈଳାସକନ୍ଦରେ ଆସନ କମ୍ପିଲା ଜାଣିଲେ ଦେବାଧିରାଜା ।
ତୁମ୍ଭମାନଙ୍କର ଭକତି ଦେଖିଣ ବିଜେକଲେ କାଶୀବାସୀ ।
ଡ଼ିବଡ଼ିବ କରି ଡ଼ମ୍ବରୁ ବଜାନ୍ତି ବୃଷଭ ପିଠିରେ ବସି ।
ଶିରେ ଦିବ୍ୟଜଟା କଣ୍ଠିରେ କାଛଟା ବିଭୂତି ଭୂଷଣ ଶୋଭେ ।
ମହାଯୋଗେଶ୍ୱର ଭୋଳା ଦିଗମ୍ବର ପ୍ରସନ୍ନ ହୋଇଲେ ଭାବେ ।
ଦେଖିଦେବ କାଶୀନାଥ ପରଶଂସି ବୋଇଲେ ବାକ୍ୟ ସଂକ୍ଷେପେ
ମର୍ତ୍ତ୍ୟରେ ଥିବ କି ସ୍ୱର୍ଗକୁ ଯିବ ହେ ଏଡ଼େ ଦୃଢ଼ବର ତପେ ।
ଇନ୍ଦ୍ରିୟ ନିରୋଧି ଆହାର ନିନ୍ଦିଛି ଅମ୍ଭ ପାଦେ କଲ ସେବା ।
ତୁମ୍ଭ ସେବା ଦେଖି ପ୍ରସନ୍ନ ହୋଇଲୁଁ ବର ମାଗ ଏବେ ଦେବା
ମୁନି ଏ ବୋଇଲେ ଯୋଗେଶ ପୁରୁଷ ଶୁଣିମା ନିବେଦନାହିଁ ।
ଏତେ ଘୋରତପ ତୁମ୍ଭଙ୍କୁ କରୁଛୁଁ ମୁକତି ଲଭିବା ପାଇଁ ।
ଈଶ୍ୱର ବୋଇଲେ ଏ ମହାବିଶ୍ୱରେ ନାହିଁ ଅମ୍ଭ ଅଧିକାର ।
ମୁକତି ଦେବ ଲି ସେ ଯେଉଁକଥା ଗୋଟି ବିଷ୍ଣୁଙ୍କ କୋଠିଭଣ୍ଡାର
ରାକଣ୍ଠ ସମ୍ଭବ ବଣପଣ ଆଦି ଏହା ଯେବେ ଦେବା ଧେନ ।
ଆମ୍ଭେ ତା ଦେବାକୁ ବର୍ତ୍ତମାନ ନୋହୁ ଠାକୁରଙ୍କ କୋଠଧନ

ମୁନିଏ ବୋଇଲେ ଏ କି ବିପରୀତ ଶୁଣ ହେ ଶ୍ମଶାନବାସୀ ।
ବୃଥା ଆମ୍ଭେମାନେ ଯେତେ ତପ କଲୁଁ ନିଷ୍ଫଳ ହୋଇଲା ଆସି ।
ପାର୍ବତୀନାଥଙ୍କୁ ସେବା କରି ଯେବେ କିଛି ଫଳ ନ ପାଇଲୁଁ ।
କାର୍ଯ୍ୟ କାରଣତ କିଛିହିଁ ନୋହିଲା ବୃଥାରେ ଗଞ୍ଜି ହୋଇଲୁ ।
ଶୁଣି ସଦାଶିବ ମୁନିଙ୍କୁ ବୋଇଲେ ଆତଙ୍କେ ନ ଭାଳ କିଛି ।
ଆମ୍ଭ ସେବା କରି ମୁକତି ନ ହେବ ତୁମ୍ଭଙ୍କୁ କାରଣ ଅଛି ।
ତ୍ରେତାଯୁଗରେହିଁ ଯେତେ ତପ କଲ ଫଳଶ୍ରୁତି ଆଉ ନାହିଁ ।
ତୁମ୍ଭମାନଙ୍କର ପୁଣ୍ୟ ବିନାଶିବ ଦ୍ୱାପର ଯୁଗରେ ଯାଇଁ ।
ନିରାକାର ପ୍ରଭୁ ମାନବ ମୂରତି ଦନୁଜମାନଙ୍କ ତାପେ ।
ଗୋପପୁରେ କୃଷ୍ଣ ନାମେ ଜନମିବେ ରଙ୍ଗ ଅବତାର ରୂପେ ।
ତୁମ୍ଭେ ସର୍ବଋଷି ଏ ବାସନା ଘେନି ସେହିପୁରେ ଜନମିବ ।
ଅତି ରସରୂପ ବ୍ରଜନାରୀ ରୂପ ଧରି ବସ୍ତ୍ରା ପାଳୁଥିବ ।
ନବଯଉବନ ରୂପ ସଦା ଥିବ କେବେହେଁ ନୋହିବ ଭଙ୍ଗ ।
ପତିମାନେ କେହି ଅମାନ୍ତି ନ କରି ନ ଛୁଇଁବେ ତୁମ୍ଭ ଅଙ୍ଗ ।
ସବୁ ଗୋପୀଙ୍କର ଶ୍ରୀକୃଷ୍ଣ ହୋଇବେ ପ୍ରାଣରବଲ୍ଲଭ ପତି ।
ତ୍ରେତାଯୁଗରେହିଁ ଯେତେକ ତପ ଫଳ ତେଣୁ ପାଇବ ମୁକତି ।
ସଦାଶିବ ବାଣୀ ମୁନିମାନେ ଶୁଣି ଗୁଡ଼ିଲେ ହୃଦର ବ୍ୟଥା ।
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ ! ତୁମ୍ଭ ପୂର୍ବଜନ୍ମ କଥା ।
ତୁମ୍ଭେ ଯେତେ ଗୋପୀ ବ୍ରହ୍ମମୟୀ ତପୀ ପ୍ରତ୍ୟକ୍ଷେ ଶ୍ରୀକୃଷ୍ଣ ଦେହ
ଅନବରତରେ ପ୍ରଭୁଙ୍କୁ ଭଜିଲେ ତେଣୁ ତୁମ୍ଭେ ସାନ ନୁହ ।
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ! ତୁମ୍ଭେ ଅଟ ମହାମାନ୍ୟ
ପୂର୍ବଜନ୍ମ କଥା ସମସ୍ତ କହିଲ ଆମ୍ଭର ଜୀବନ ଧନ୍ୟ ।
କୃଷ୍ଣ ଥିଲାକାଳେ ଯେତେ ସୁଖମାନ ସେ ସୁଖ ପାଇବା କାହିଁ ।
ଏବେ ଯେତେ ଗୋପପାଟଣାରେ ଅଛୁ ଆମ୍ଭଠାରୁ ପାପୀ ନାହିଁ ।
କେତେଦିନେ ପ୍ରଭୁ କେତେ ସୁଖ ଦେଲେ ମନରୁ ନୁହେ ବିସ୍ମର
ଘରେ ବା ବାହାରେ ଯେଉଁଆଡ଼େ ଚାହୁଁ ତେଣେ ଦିଶୁଛନ୍ତି ହରି
ଏଡ଼େ ପ୍ରଭୁ ହୋଇ କେଉଁ କଥା ପାଇଁ ମନରେ ଗର୍ବ ବହିଲେ ।

ଅମ୍ଭମାନଙ୍କୁ ତ ଅନାଥା କରଣ ମଥୁରାପୁରେ ରହିଲେ ।
ହୃଦୟ କମଳେ ଚିନ୍ତା ନୋଇ କର ଯୋଡ଼ାଇଲେ ଦିବ୍ୟ ଚକ୍ଷୁ ।
ବେନି ନୟନରେ ଡ଼ାକୁଣି ପଡ଼ିଲା ଅନ୍ଧ ପ୍ରାପ୍ତ ହୋଇଅଛୁଁ ।
ତୁମ୍ଭେ ଯେ ଭକତ ସମସ୍ତଙ୍କ ହିତ ପ୍ରତ୍ୟକ୍ଷେ ଶ୍ରୀକୃଷ୍ଣ ଦେହ ।
କେତେଦିନେ ପ୍ରଭୁ ଗୋପକୁ ଆସିବେ ସେ କଥା ଆମ୍ଭଙ୍କୁ କହ ।
ଉଦ୍ଧବ ବୋଇଲେ ଶୁଣ ଗୋପନାରୀ ! ଅଧିକ ବିସ୍ତର କାହିଁ ।
ମୋତେ ପେଷିଛନ୍ତି ତୁମ୍ଭମାନଙ୍କର ବାରତା କହିବାପାଇଁ ।
ତୁମ୍ଭେ ଯେତେ ଗୋପୀ ବ୍ରହ୍ମମୟ ତପୀ ପ୍ରଭୁଙ୍କୁ ଭଜିଲ ଯେଣୁ ।
ସେହି ତୁମ୍ଭ ନାମ ମନରେ ବିସ୍ମର ଗ୍ଲାନି ନ ପାରନ୍ତି ତେଣୁ ।
ମୋତେ ବୋଇଲେ ତୁ ଗୋପୀଙ୍କି କହିବୁ ପ୍ରବୋଧିଜ୍ଞାନବଚନେ
ଅବଶ୍ୟ ଆମ୍ଭେ ଯେ ଦର୍ଶନ କରିବୁଁ ଜ୍ଞାନ କରୁଥିବେ ମନେ ।
ଗୋପୀଏ ବୋଇଲେ ଗଣ୍ଠିଆ ପୁରୁଷ ଗୋପକୁ ଆସିବେ କାହିଁ
ତୁମ୍ଭ ମୁଖୁ ଶୁଣି ତାହାଙ୍କର କଥା ଅମ୍ଭର ବିଶ୍ୱାସ ନାହିଁ ।
ଉଦ୍ଧବ କହିଲେ ବିଧାତା କରୁଛି କର୍ମର ବିପାକ ଧନ୍ଦା ।
ଦୂତପଣେ ଆମ୍ଭେ ଗୋପକୁ ଆସିଲୁଁ ପ୍ରଭୁଙ୍କୁ ହୋଇଲା ଦନ୍ଦା ।
ଯଥୋଚିତ ଧର୍ମ ସାତ୍ତ୍ୱିକ ଭାବରେ କହିଲେ ବହିଲ ଘୋଷ ।
ଭାଷାରେ ତୁମ୍ଭଙ୍କୁ ଜିଣି ତ ନପାର ନଜାଣି ଅର୍ଜିଲୁଁ ଦୋଷ ।
ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ ! ତୁମ୍ଭେଯେପ୍ରଭୁଙ୍କ ଦେହ
ତାଙ୍କୁ ଅମ୍ଭେମାନେ କାହିଁକି ନିନ୍ଦିବୁଁ ସେ କଥା ଅମ୍ଭଙ୍କୁ କହ ।
ବ୍ରଜଗୋପୀମାନେ ଏକଥା କହନ୍ତେ ଉଦ୍ଧବ କରୁଣା ବହି ।
ସାନନ୍ଦ ହୋଇଣ ଅଟ୍ଟହାସ କଲେ ଗୋପୀଙ୍କ ମୁଖକୁ ଚାହିଁ ।
ଉଦ୍ଧବ ବୋଇଲେ ଶୁଣ ଗୋପନାରି ! ତୁମ୍ଭେ ଯେପ୍ରଭୁଙ୍କ ଦେହ
ଏବେ ତୁମ୍ଭେ କିମ୍ପା ତାହାକୁ ବାଞ୍ଛିଲ ସେକଥା ଅମ୍ଭଙ୍କୁ କହ ।
ଭକତମାନଙ୍କ ମାନ ଉଦ୍ଧାରଣ ଯଶୋଦାଦେବୀଙ୍କ ଶିଷ୍ୟ ।
ସେ ଅବା ତୁମ୍ଭଙ୍କୁ କି ଗୁଣ ନକଲେ ତୁମ୍ଭେ କଲ ତାଙ୍କୁ କିମ୍ପ ।
ଦରିଦ୍ରଙ୍କ ଧନ ଭକ୍ତଙ୍କ ଜୀବନ ଆତଙ୍କର ବନ୍ଧୁ ସେହି ।
ଯେତେକ ଦନୁଜ ଗୋପରେ ମାଇଲେ ନଜାଣ କି ତାଙ୍କ ବାନା

ବାଳକକାଳରେ ବ୍ରଜସୁତ ମେଳେ ବନେ କଲେ ଯେଉଁ କୃତ୍ୟ
କାଳନ୍ଦୀଜଳରେ କମଳ ତୋଳିଲେ କାଳୀୟ ଫଣାରେ ନୃତ୍ୟ ॥
ବକା ଅଘାସୁର ଯାମଳାର୍ଜ୍ଜୁନ କେଶୀ ପ୍ରଲମ୍ବାକୁ ନାଶି ।
ଅଷ୍ଟମଲ୍ଲ ଖଣ୍ଡ ଶକଟା ମାଇଲେ ପୂତନା ଜୀବନ ଶୋଷି ॥
ବନଦାହ ଦିନେ ଘୋର ବୃନ୍ଦାବନେ ମରୁଥିଲେ ବ୍ରଜସୁତ ।
ଭକତଜନଙ୍କୁ ଉଦ୍ଧର ଯୋଗାରୁ ଅଗ୍ନି ଭକ୍ଷିଲେ ଅଚ୍ୟୁତ ॥
ଅସୁର ବୀରଙ୍କି ଯେତେ କରିଥିଲେ କେତେ ସୁମରିବା କାହିଁ ।
ଦିନେ ଯେ ନନ୍ଦକୁ ସର୍ପ ଗିଳିଥିଲା ତାହୁଁ ରଖିଲେ କହ୍ନାଇ ॥
ମଧୁବନେ ଫଣି ମଲ୍ଲ ଗଜ ନାଶି ସୁଦାମା ଦୁଃଖଭଞ୍ଜନ ।
କଂସ ଆଦିକରି ସମସ୍ତ ମାଇଲେ ନଜାଣି କି ତାଙ୍କ ଗୁଣ ॥
ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ ! କହିବା ଉଚିତବାଣୀ
ପଣ୍ଡିତମାନଙ୍କ ପରାୟେ ତୁମ୍ଭେ କି କହୁଅଛ ଶାସ୍ତ୍ର ଜାଣି ॥
ଉଦ୍ଧବ ଭଣିଲେ ଶାସ୍ତ୍ରମାନଙ୍କରେ ଅନ୍ତ ପାଇବାକୁ ନାହିଁ ।
କେତେବେଳେ କି କି ବିସ୍ତର ଲେଖନ୍ତି ମୁଁ ତାହା କହିବି କାହିଁ
ତୁମ୍ଭେ ଗୋପନାରୀ କୃଷ୍ଣ ନ ବିସ୍ମରି ଦୁର୍ବୁଦ୍ଧି କାହିଁକି ଧର ।
ପ୍ରଭୁଙ୍କ ସେବକ ଅଟନ୍ତି ସେମାନେ ତାହାଙ୍କୁ ନିନ୍ଦା ନକର ॥
ଶ୍ରୀକୃଷ୍ଣ ଚରିତ ଅତ୍ୟନ୍ତ ପବିତ୍ର କବିଙ୍କ ମୁଖେ ପଢ଼ିଲେ ।
କୋଟି ଅଶ୍ୱମେଧ ଯଜ୍ଞ ତୁଲ୍ୟ ନିତ୍ୟେ ଦାନକ ପଦ ଯୋଡ଼ିଲେ ॥
ଶୁଚିମନ୍ତ ହୋଇ ଯେଉଁଣେ ଥିବ ଥାଅ ଶ୍ରୀକୃଷ୍ଣ କଥାରେ ଲୟ ।
ଧର୍ମ କର୍ମ କିଛି ନଥିଲେ ତୁମ୍ଭର ସର୍ବଦାତା ପୁଣ୍ୟମୟ ॥
ଦିନେ ମୁଁ ପ୍ରଭୁଙ୍କୁ ଏମନ୍ତ ବୋଇଲି ଶୁଣ ହେ କରୁଣାନିଧି ।
କେମନ୍ତ ପ୍ରକାରେ କବିରୂପଣରେ ପ୍ରସରଇ ଦିବ୍ୟବୁଦ୍ଧି ॥
ଧନ ଜନ ବାସ ସମ୍ପଦରେ ମୋହ ବିଷୟାଦି ସବୁ ଖେଦ ।
ଏତେ ମହାଦ୍ଭୁତ ଅଶ୍ରିତ ହେବାରୁ କାହିଁ ପୁଣି ଧ୍ୟାଇବ ପଦ ॥
କହୁଛନ୍ତି ପ୍ରଭୁ ଆମ୍ଭର ଭକତ ପୂର୍ବେ ହୋଇଥିଲେ ମୁନି ।
ଆମ୍ଭେ ଆଣି ମର୍ତ୍ତ୍ୟେ ଜନ୍ମ କରାଇଲୁଁ ଆମ୍ଭର ମହିମା ଘେନି ॥
ତେଣୁକରି ମୋର ଭକତ ଅଛନ୍ତି ପଦକୁ ଭଜିବାପାଇଁ ।

ଯେ ମୋତେ ଭଜିଲେ ମୁଁ ତାଙ୍କୁ ଜାଣଇ ଏଥିରେ ସନ୍ଦେହନାହିଁ
ଶାନ୍ତି ଧୈର୍ଯ୍ୟ ଆଦି ବିବେକ ଆରମ୍ଭି ଅଛଇ ଯେତେକ ଗୁଣ ।
ସେମାନଙ୍କଠାରେ ଅଛି ମୁଁ ଥୋଇଣ ଉଦ୍ଧବ ମୋଠାରେ ଶୁଣ ।
ତେଣୁ କରି ମୁହିଁ ପ୍ରକାଶ ହୁଅଇ କବିଙ୍କ ହୃଦରେ ପଶି ।
ଯହିଁକି ଯେ ପଦ ଯେମନ୍ତ ଘଟଇ କହି ଦେଉଥାଇଁ ବସି ।
ବିଷୟରସରେ ଯେ ସବୁ କବିତା ପଦ ବିସ୍ତରିଲେ ହେଲେ ।
ସେହି ପାଶୋରିଲେ ମୁହିଁ ନ ଛାଡ଼ଇ କହି ଦେଉଥାଇ ବଳେ ।
ସେହି ମତେ ପୁଣି ଅନ୍ତର୍ଗତେ ବୁଝି ବୋଲୁଥାଇ କୃଷ୍ଣ ରାଧା ।
ମନସ୍ଥିର ଦେଖି ଚିତ୍ତ ହୁଏ ସୁଖୀ ତେଣୁ ମୁଁ ତାଙ୍କ ଶରଧା ।
ଭକ୍ତଙ୍କ ମୁଖେ ମୁଁ ନିରନ୍ତରେ ଥାଏ ଏମନ୍ତ ବୋଇଲୁଁ ଜାଣ ।
ଯେ ଯେତେ କରଇ ମୁଁ ତେତେ ହୁଅଇ ଏକଥା ମୋର ପ୍ରମାଣ
ସାନ ବଡ଼ କଲୁ ଏମନ୍ତ ବୋଲି ଯେ ଭକ୍ତକୁ ବାଛିଲ ଯାହା ।
ମୁଁ ଯେବେ ତାହାଙ୍କୁ ପ୍ରସନ୍ନ ନୋହିବି ଯେ କାହୁଁ କହିବେ ତାହା
ଭକ୍ତ ମୋ ଜୀବନ ବୋଲି କହିଛନ୍ତି ଶ୍ରୀମୁଖେ ବଚନ ଦୃଢ଼ ।
ତେଣୁ କରି ଆମ୍ଭେ ଆମ୍ଭର ମହିମା କରୁଥାଇ ସାନ ବଡ଼ ।
ଯେ ମୋତେ ଚିହ୍ନିଲେ ମନରେ ଘେନିଲେ ଆମ୍ଭେ ତାନପାରୁଁ ଛାଡ଼ି
ବାହ୍ୟ ପ୍ରକାରରେ ଲୋକଙ୍କ ଲଜ୍ଜାକୁ ଅନ୍ତର୍ଗତେ ଥାଉଁ ଜଡ଼ି ।
ମୋର ଦ୍ରବ୍ୟ ନେଇ ଜଗତେ ବିକଇ ତେଣୁ ସେ ନପାଏ ହାନି ।
ସବୁ ବାଣିଜ୍ୟରେ ବ୍ୟବସା କରଇ ମୋହର ମହିମା ଘେନି ।
ଯେଉଁ ଜନ ମୋର ବିଷୟରେ ପଡ଼ି ବିମୁଖ ହୁଅଇ ଯେତେ ।
ନାନା କୋପ କରି ତାପ କରିଲେହେଁ ଶରଧା ଲାଗଇ ମୋତେ
ମୋହର ଭକତ ମୋ ଗୁଣ ଜାଣଇ ଅନ୍ୟ ଜାଣିବାକୁ ନାହିଁ ।
ଏକା ବଚନରେ ସନ୍ଦେହ ଛାଡ଼ିଲୁ ଅଧିକ କହିବା କାହିଁ ।
ଭକତ ଲକ୍ଷଣ ଦେବ ନାରାୟଣ ଶ୍ରୀମୁଖେ କହିଲେ ଯେତେ ।
ଉଦ୍ଧବ ବୋଇଲେ ଶୁଣ ଗୋପନାରି ! କବିଙ୍କ ମହିମା ଏତେ ।
ତୁମ୍ଭେମାନେ ଅବା କେମନ୍ତେ ବାଛିଲ ଯୋଗତ ଆଦ୍ୟେ ଗୋପୀବୃନ୍ଦ
ଆହୁରି ବିଶେଷ ଅଳପ ବିଦ୍ୟାଏ କବିଙ୍କ ଶାସ୍ତ୍ରକୁ ନିନ୍ଦ ।

ଗୋପୀ ବୋଇଲେ ତା କେ ନନ୍ଦାନନ୍ଦ ଉଦ୍ଧବ ପ୍ରସ୍ତାବେ କହିଲ ସିନା
ଅମ୍ଭେ ବୋଇଲେ କ ସେ ନାସ୍ତି ହୋଇବ ଶ୍ରୀକୃଷ୍ଣ ପ୍ରଭୁ ଭଜନା
ଅମ୍ଭେ ମହାପାପୀ ଅଲକ୍ଷଣୀ ଗୋପୀ କର୍ମରେ ଅରଜ ନାହିଁ ।
ସୁଖଲଭ ଦ୍ରବ୍ୟ ମୁକତ ସମ୍ବାଦ ଖୋଜିଲେ ପାଇବୁଁ କାହିଁ ।
କୋକିଲ ଯେମନ୍ତ ବାୟସ ବସାରେ ଡିମ୍ବକୁ ଥୁଅଇ ଆଣି ।
ପକ୍ଷ ହୋଇଲେ ଅପକ୍ଷ ହେଲା ମୂଳ କୁଟୁମ୍ବ ନ ଜାଣି ।
ପିତା ବୀଜ ଧ୍ୱସି ମାତା ରକ୍ତ ନାଶି ଯାହା ଅଶ୍ରାରେ ରହିଲା ।
ସେହି ସେ ତାହାକୁ ଶବ୍ଦ ପ୍ରଣ କଲା କୌଣସି ଅଡ଼େ ନୋହିଲା
ସେହିମତ ଅମ୍ଭ ପୂର୍ବର ଅର୍ଜିତ କର୍ମଫଳ ହେଲା ବୀଜ ।
ବରଜକୁଳରେ ଜାତହୋଇ ଦୁଇ କୁଳରୁ ଗୁଡ଼ିଲ ଲାଜ ।
ତାହା ପରେ ଅସି ବେଦ କୁଳ ନାଶି ଯାହା ଅଶ୍ରାରେ ରହିଲ
ସେ ପ୍ରଭୁ ଅମ୍ଭଙ୍କୁ ଅନାଥ କରିଲେ କୌଣସି ଅଡ଼େ ନୋହିଲ
ଭକତ ଲକ୍ଷଣ କହିଲେ ଅମ୍ଭଙ୍କୁ ଯାହା ତା ଅମ୍ଭର କାହିଁ ।
ଅମ୍ଭେ ମହାପାପୀ ଗୋପପୁର ଗୋପୀ ଗତର ବାସନା ନାହିଁ ।
ଉଦ୍ଧବ ବୋଇଲେ ବାସନା ନଥିଲେ କେମନ୍ତେ ଦେହ ବହିଲ
ଯୁବତୀ ରୂପରେ ଗୋପନାରୀ ହୋଇ ଶ୍ରୀକୃଷ୍ଣ ଅଙ୍ଗ ଛୁଇଁଲ ।
ପୂର୍ବର କରମ ଯେତେ ପୁଣ୍ୟ ଜନମ ତେଣୁ ଲଭିଲ ଏ ସୁଖ ।
ଯୋଗୀମାନେ ଯାହା ଭେଟି ନପାଆନ୍ତି ତୁମ୍ଭେ ତାଙ୍କୁ ନେତ୍ରେ ଦେଖ
ଗୋପୀଏ ବୋଇଲେ କେତେଦିନ ଅମ୍ଭେ ଦେଖିଥିଲୁ ଗୋପେ ବସି
ଏବେ କାହୁଁ ତାଙ୍କ ଦର୍ଶନ ପାଇବୁ ନକହେ ମନକୁ ତୋଷି ।
ବରଜତରୁଣୀ ପ୍ରଭୁ ଗୁଣଗୁଣି ସୁରୁର ମନେ ଆନନ୍ଦ ।
ଉଦ୍ଧବ ଗୋପୀଏ ଶ୍ରୀକୃଷ୍ଣ କଥାରେ ଲଗାଇ ଅଛନ୍ତି ଦ୍ୱନ୍ଦ ।
ଏମନ୍ତ ସମୟେ କଥା ପଡ଼ୁ ପଡ଼ୁ ରାଧିକା ମିଳିଲେ ଆସି ।
ଉଦ୍ଧବଙ୍କୁ ତୁହି ବଚନ କହିଲେ ଗୋପୀଙ୍କ ମଧ୍ୟରେ ବସି ।
ଭକ୍ତଙ୍କ ଉତ୍ତମ ଶୁଣ ହେ ଉଦ୍ଧବ ! କାହୁଁର ଆସିଛ କିସ ।
ଅକ୍ରୂରକୁ ଯେସି କୃଷ୍ଣଙ୍କୁ ନେଇଛ ଏବେ କି ନେବାକୁ ବସ ।
ନନ୍ଦ ଯଶୋବନ୍ତୀ ମାତା ବେନି ଜନ ଏହାଙ୍କୁ ପାରିଲେ ନାଥ ।

ଗୋପପୁର ଛାଡ଼ି ପରଜାଙ୍କୁ ଗଢ଼ି ଅମ୍ଭଙ୍କୁ ଘଞ୍ଜଡ଼ି ଦେଇ ।
ଉଦ୍ଧବ ବୋଇଲେ କୋପ ପରିହର ସଖୀରେ କହିବା ବାଣୀ ।
ସାବଧାନ ହୋଇ ଶୁଣିମା ଗୋସାଇଁ ଶ୍ରୀକୃଷ୍ଣଙ୍କ ପାଠେରାଣୀ ।
କଥାରେ ପ୍ରସ୍ତାବେ ମନ ଗୁରୁତାପେ ପଠାନ୍ତର ବେଳ ଯାହା ।
ଠାକୁରଙ୍କଠାରୁ ଯେଉଁ ଆଜ୍ଞା ହେଲା ମୋଠାରୁ ଶୁଣ ଗୋ ତାହା
ଜଗତଜୀବନ, ଦୁଃଖୀଲୋକ ପ୍ରାଣ ନନ୍ଦ ଯଶୋଦାଙ୍କ ଧନ ।
ସେ ଯେବେ ମଥୁରା କଟେକେ ରହିଲେ ତୁମ୍ଭଠାରେ ତାଙ୍କ ମନ ।
ଯୋଗାଧିପୁରୁଷ ଯଶୋଦାଙ୍କ ଶିଷ୍ୟ ଭକତ କରୁଣା ସାଇଁ ।
ଦୂତପଣେ ମୋତେ ପଠାଇ ଅଛନ୍ତି ତୁମ୍ଭଙ୍କୁ ବୋଧିବାପାଇଁ ।
ତୁମ୍ଭ ମନକଥା ହୃଦୟ ବାରତା ଜାଣିଲେ କରୁଣାସିନ୍ଧୁ ।
ମନ ବଚନକୁ ସର୍ବଦା ରଞ୍ଜିଲ ତେଣୁ ତୁମ୍ଭେ ତାଙ୍କ ବନ୍ଧୁ ।
ଗୋପୀଏ ବୋଇଲେ ଯେତେ କଥାମାନ କହନ୍ତି ଶାରଙ୍ଗପାଣି ।
ମହାପ୍ରଭୁ ବୋଲି କିଛି ନ ବୋଲିବା ଅମ୍ଭେ ସବୁ ତାହା ଜାଣି ।
ଯାହାଲାଗି ଗୃହ କୁଟୁମ୍ବ ବାନ୍ଧବ ଜାତି କୁଳକୁ ତେଜିଲୁଁ ।
ତାହାଙ୍କର ଦୟା ଏତେ କାଳେ ହେଲା ଏବେ ମନରେ ପଢ଼ିଲୁଁ ।
ସେ ଯେ ନାରାୟଣ ଜଗତ କାରଣ ଜାଣନ୍ତି ହୃଦୟ ବ୍ୟଥା ।
ଭକତମାନଙ୍କୁ ଦୁଃଖ ଯେ ଦିଅନ୍ତି ଏ ତାଙ୍କ କେମନ୍ତ କଥା ।
ଯେଉଁଲୋକ ଯାକୁ ପରମ ଆଶାବେ ଦୃଢ଼ ମନରେ ଧରିଛି ।
ଭୋଜନ ବସନ ନ ଦେଲେ ତାହାର ପ୍ରଭୁପଣ କି ହେଉଛି ?
ଯେଉଁ ଜଗଜ୍ଜ୍ୟୋତି ଦର୍ଶନେ ମୁକତି ପ୍ରସନ୍ନେ କଲୁଷ ନାଶେ ।
ଆପଣା ଭୃତ୍ୟକୁ ଦୁଃଖ ଦେଲେ ନିଜ ପ୍ରଭୁପଣ ବଡ଼ ଦିଶେ ।
ପ୍ରଭୁ ହେବେ ସୁଖୀ ଭୃତ୍ୟ ହେଲେ ଦୁଃଖୀ ଲୋକେ କାହାକୁ ବାଛିବେ
ଏ କଥା ତାହାଙ୍କୁ ଲଜ୍ଜା ନ ହେବ କି ମନରେ ବିଚାର ତୁମ୍ଭେ ।
ଉଦ୍ଧବ ବୋଇଲେ, ଶୁଣ ଗୋପନାରୀ ! ବ୍ରହ୍ମାଣ୍ଡ ଠାକୁର ହରି
ଭକତମାନଙ୍କୁ ତାରିବା ନିମନ୍ତେ ଅଛନ୍ତି ଏମନ୍ତ କରି ।
ଗୋପୀଏ ବୋଇଲେ କେମନ୍ତେ ଜାଣିବା ମନରେ ପ୍ରତ୍ୟୟ ନାହିଁ
ତୁମ୍ଭେ ଯେ ମହତ ଠାକୁରଙ୍କ ଦୂତ ବସ୍ତୁ'ର କହ ଗୋସାଇଁ ।

ଉଦ୍ଧବ ବୋଇଲେ, ଶୁଣ ଗୋପନାରି ! ପ୍ରଭୁ କହିଛନ୍ତି ଯଥା ।
ତୁମ୍ଭ ଅଗ୍ରେ ଦେଣୁ ପ୍ରକାଶ କରୁଛି ସତ୍ୟଯୁଗର ସେ କଥା ।
ହିରଣ୍ୟ ନାମରେ ଦନୁଜ ଜନ୍ମିଲା ପୃଥିବୀକି ମହାଭାର ।
ତାହାର ଔରସରେ ସନ୍ତାନ ଜାତ ପ୍ରହଲ୍ଲାଦ ନାମରେ ବୀର ।
ସେ ବୀର ହିରଣ୍ୟ ଈଶ୍ୱରଙ୍କ ପାଖେ ସେବାକଲେ ନିତେ ଯାଇ
ଶିବ ପୁରାଣକୁ ସର୍ବଦା ପଢ଼ଇ ବିଷ୍ଣୁ ପୁରାଣକୁ ଛାଡ଼ି ।
ସେତେବେଳେ ତହିଁ ଶ୍ରୀକୃଷ୍ଣଙ୍କୁ ନିନ୍ଦେ ବିଷ୍ଣୁ ନାମେ ଯାଏ ବ୍ୟଥା
ପୁତ୍ର ପ୍ରହଲ୍ଲାଦ ଯେଉଁ ଶାସ୍ତ୍ର ପଢେ ସେହି ଶିବଙ୍କର କଥା ।
ଦିନେକ କୁମର ଚାଟଶାଳଠାରେ ଗୁରୁଙ୍କ ଶ୍ରୀମୁଖରେ ପୁଛି
ହରି ହର ବେନି ପୁରାଣ ମଧ୍ୟରେ ମୁକତି କାହିଁରେ ଅଛି ।
ଗୁରୁ ବୋଇଲେ ଯେ ଶିବ ପୁରାଣରେ ମୁକତି ନାହିଁଟି ଜାଣ ।
ପୁଣ୍ୟମୟ ମୁକ୍ତି ସେବେ ଲଭପାରୁ ପଢରେ ବିଷ୍ଣୁ ପୁରାଣ ।
ଗୁରୁଙ୍କ ବାକ୍ୟରେ ସନ୍ତୁଷ୍ଟ ହୋଇଲେ ହିରଣ୍ୟ ରାଜାର ସୁତେ ।
ଶିବ ପୁରାଣକୁ ପରିତ୍ୟାଗ କରି ପଢିଲେ ବିଷ୍ଣୁଙ୍କ ପାଠ ।
ନିଶି ଦିବସରେ ପରିଶ୍ରମ କରି ଘୋଷନ୍ତି ବିଷ୍ଣୁ ପୁରାଣ ।
ଷାଠିଏ ଦିନରେ ଷଷ୍ଠୀକୋଟି ଗ୍ରନ୍ଥ କଣ୍ଠସ୍ଥ କଲେ ସେ ଜାଣ ।
ଦିନେକ ହିରଣ୍ୟ ପୁତ୍ରକୁ ଡାକିଣ ପଚାରିଲା ରେ କୁମର ।
କେତେଦିନେ ବାପୁ କି ପାଠପଢ଼ିଲୁ ମୋଆଗେ କହ ସତ୍ୱର ।
ପିତାଙ୍କ ବଚନେ ପ୍ରହ୍ଲାଦ କୁମର ପୁରାଣ କଲା ବ୍ୟାଖ୍ୟାନ ।
ଆଦିଅନ୍ତ କରି ସବୁ ସେ ପଢ଼ିଲା ଯେତେକ ବିଷ୍ଣୁ ପୁରାଣ ।
ଶୁଣି ତା ଦନୁଜ ପୁତ୍ର ମୁଖ ଚାହିଁ କୋଧରେ ଓଷ୍ଠ କାମୋଡ଼ି ।
କହିଲା କୁମର ନଷ୍ଟେଁ ଗଲୁ ନାଶ ଶ୍ରୀକୃଷ୍ଣ ଚରିତ ପଢ଼ି ।
ଶିବଙ୍କ ପୁରାଣ ପଢିବ କାରଣ ଏ ପାଠ ପଢ଼ିଲେ ତରୁ ।
ଆମ୍ଭର ବଇରୀ ଦେବ ଚକ୍ରଧାରୀ ତାହା ନାମ କିମ୍ପା ଧରୁ ।
ଏବେ ତୁହି ବାପୁ ଅଧ୍ୟୟୀ ହୋଇବୁ ଶିବନାମ ଦୃଢ଼ କର ।
ମର୍ତ୍ତ୍ୟମଣ୍ଡଳରେ ତୋତେ ମୁଁ ସ୍ଥାପିବି ଶ୍ରୀକୃଷ୍ଣ ନାମ ନଧର ।
ପିତାଙ୍କ ବଚନେ ପ୍ରହ୍ଲାଦ କହିଲେ ଶୁଣ ହେ ବାପ ଗୋସାଇଁ

କୋଟି କୋଟି ବ୍ରହ୍ମା କୋଟି କୋଟି ଶିବ ବସନ୍ତି ସଙ୍ଗେ ଯାର ନାହିଁ
କୋଟିଏ ବ୍ରହ୍ମାଣ୍ଡ ଲୋମେ ଧରଛନ୍ତି ତୁମ୍ଭ ଆଗେ କହୁଁ ଶୁଣ ।
ଅଷ୍ଟର ପେତେଜ ଦେବତା ଅଛନ୍ତି ସିନ୍ଧୁ ଫେନ ପ୍ରାୟେ ଜାଣ ।
ଶ୍ୱେତପଦ୍ମ ତୋଳା ଯାହାରକୁ ଭେଳା ରୂପେ ଜଗନ୍ନାଥ ମୋହେ
କୋଟିଏ ଈଶ୍ୱର ଯେଉଁ ପାଦତଳେ ଭୃତ୍ୟପଣେ ସରିନୋହେ
ଶୁଣିଣ ହିରଣ୍ୟ ଖଡ୍ଗ ଯେ ନେଇ ପୁତ୍ରକୁ ବହିଲା ରୋଷ ।
କୁଳ ଦେବତାଙ୍କୁ ନିନ୍ଦା କଲୁ ବୋଲି ଆକର୍ଷି ଧରିଲା କେଶ ।
ପାର୍ଶ୍ୱସ୍ଥ ଦୂତଙ୍କୁ ଆହ୍ୱାନ କରିଣ ଆଜ୍ଞା ଦେଲା ନୃପମଣି ।
ଏହିକ୍ଷଣି ମୋର ପୁତ୍ରକୁ ନେଇଣ ବେନିଖଣ୍ଡ କରି ହାଣ ।
ଶୁଣି ଦୂତମାନେ ଧରି ଘେନିଗଲେ ଆଜ୍ଞା ଲଙ୍ଘିବାକୁ ନାହିଁ ।
ପ୍ରହ୍ଲାଦ ମୁଣ୍ଡକୁ କାଟି ଦୂତମାନେ ବାରତା କହିଲେ ପାଇଁ ।
ଏମନ୍ତ ସମୟେ ଅନ୍ତର୍ଯାମୀ ନାଥ ଧ୍ୟାନରେ ଜାଣିଲେ ତାହା
ଭକ୍ତକୁ ବିପତ୍ତି ପଡ଼ିବା ଯାହରେ ସେଠାରେ ହୋଇଲେ ସାହା
ଅତିଶୀଘ୍ର ଯାଇଁ ଜୀବଦାନ ଦେଇ ଗଣ୍ଡି ମୁଣ୍ଡ ଏକ କରି ।
ଗୃହକୁ ସତ୍ୱରେ ଯାଅ ହେ କୁମର କହି ଅନ୍ତର୍ଦ୍ଧାନ ହରି ।
ଶ୍ରୀକୃଷ୍ଣ ବଚନ ପ୍ରହ୍ଲାଦ ଶୁଣିଣ ନିଜ ଗୃହକୁ ଆସିଲେ ।
କୋଟିଏ କନ୍ଦର୍ପ ମୂର୍ତ୍ତି ଧରି ଜନ୍ମ ପିତା ନିକଟେ ମିଳିଲେ ।
ଦେଖି ନୃପଯାଏଁ କୋପଭର ହୋଇ ହସ୍ତୀ ଦନ୍ତରେ ଚିରାଇ ।
ବନ୍ଦଶୀ କଣ୍ଠରେ ଥୋପ ଗୁନ୍ଥି କରି ସମୁଦ୍ରେ ମେଲିଲେ ନେଇ ।
ସମୁଦ୍ର ଭିତରେ ପ୍ରହ୍ଲାଦ ବୀରକୁ ରାଘବ ଗିଳିଲା ପଡ଼ୁଁ ।
ରାଘବ ବଇରୀ ରାଘବକୁ ମାରି ଭକ୍ତକୁ ଆଣିଲେ ତହୁଁ ।
ପୁଣିହିଁ କୁମର ପ୍ରହ୍ଲାଦ ବୀର ମିଳିଲା ମାତାଙ୍କ ପାଶ ।
ରାକ୍ଷସ ହିରଣ୍ୟ ପୁତ୍ରକୁ ଚାହିଁଣ ମନରେ ବହିଲା ରୋଷ ।
ଦିବସରେ ଶେଷେ ଭୋଜନାବକାଶେ ପୁତ୍ରକୁ ଘେନିଣ ଗଲା ।
ଭୋଜନ ଦ୍ରବ୍ୟରେ ପ୍ରହ୍ଲାଦ ବୀରକୁ କାଳକୂଟ ବିଷ ଦେଲା ।
ଭୁଞ୍ଜି କରି ମୃତ ହେଲା ଅଶକତ ଅଙ୍ଗରେ ଚେତନା ନାହିଁ ।
ଆଚମନ ସାରି ଉଠିଣ ଚଳିଲା କାଳକୂଟ ବିଷ ଖାଇ ।

ଦେଖି ତା ଜନନୀ ଶୋକଭର ହୋଇ କୋଡ଼ରେ ଧଇଲା ଆଣି
ହା ହା ପୁତ୍ର ବୋଲି ରୋଦନ କରଇ ହିରଣ୍ୟ ରାଜାର ରାଣୀ ।
ନଗର ମନୁଷ୍ୟ ସମସ୍ତେ ଧାଇଁଲେ ଶୁଣି କରି ଠେଲଠେଲି ।
ଅନ୍ତଃପୁର ମଧ୍ୟେ ଡ଼ାକ ପଡ଼ିଗଲା ପ୍ରହଲ୍ଲାଦ ମଲା ବୋଲି ।
ଏମନ୍ତ କାରଣ ଧ୍ୟାନେ ନାରାୟଣ ଜାଣିବାମାତ୍ରେ ତକ୍ଷଣ ।
ବିପ୍ର ରୂପ ଧରି ପ୍ରବେଶ ହୋଇଲେ ଭକ୍ତଙ୍କ ଦୁଃଖଭଞ୍ଜନ ।
ପରସନ୍ନ ହୋଇ କହିଲେ ଗୋସାଇଁ ମନରେ ନକର ତାପ ।
ତୋ ପୁତ୍ର ମରଣ ଶୁଣି ମୁଁ ଆସିଛି କେମନ୍ତେ ମଲାରେ ବାପ ।
କେ ଟି ସୁଧାକର ସମ ନୋହେ ତୋର ଭାଲ ଚନ୍ଦନ ବିନ୍ଦୁ ।
ଶତ୍ରୁ ହୋଇଥିଲେ ପ୍ରହରେ ଗ୍ରହିବ ମୁଖମଣ୍ଡଳ ଇନ୍ଦୁ ।
ପୁଣି ପ୍ରହଲ୍ଲାଦ ଜନନୀକି ବୋଧ ଦେଇ କହିଲେ ଗୋ ମାତା ।
ତୋର ପୁତ୍ର କଥା ଆମ୍ଭଙ୍କୁ ଲାଗଇ ଛାଡ଼ ତୁ ମନରୁ ଚିନ୍ତା ।
ଯେତେବେ ଦେବବାକ୍ୟ ନଷ୍ଟେ ଥିବ ସତ୍ୟ ବଞ୍ଚିବ ତୋହର ଶିଶୁ
ତୁମ୍ଭେମାନେ କେହି ଆତଙ୍କେ ନ ଭାଳ ଆମ୍ଭେ ଝାଡ଼ିବା ଯେ ବିଷ
ମନ୍ତ୍ରକୁ ଉଚ୍ଚାରି ତୈଲୋକ୍ୟ ବିହାରୀ କର ରେ ଆଉଁସି ଦେଲେ
ଉଠ ଉଠ କହି ଫୁଲପାଣି ନେଇ କୁମର ମୁଖେ ସିଞ୍ଚିଲେ ।
ପ୍ରହ୍ଲାଦ କୁମର ଲାଗି ପଦ୍ମକର ଉଠିଲେ ଚେତନା ପାଇ ।
ଅନ୍ତର୍ଦ୍ଧାନ ହୋଇ ଅଖିଳକରତା ଗଲେ ନ ଦେଖିଲେ କେହି ।
ଏହି ବିଷଯୁକ୍ତ କଛୁଦିନ ପରେ ଜାଣିଲେ ହିରଣ୍ୟ ରାଜା ।
ପୁଣିହିଁ ପୁତ୍ରକୁ ମାରିବା ନିମନ୍ତେ ଉପାୟ କଲେ ସହଜ ।
ଅନ୍ଧାର ନିଶିରେ ଅଚେତ ନିଦ୍ରାରେ ଶିର ଛେଦୁଇ ମାଇଲା ।
ଢିଙ୍କିରେ କୁଟାଇ ଶିଳାରେ ବାଟଇ ବ୍ୟଞ୍ଜନ କରି ଖାଇଲା ।
ଦେଖି ତା ଜନନୀ ଶୋକଭର ହୋଇ ନାରାୟଣଙ୍କୁ ସୁମରି ।
ପୁତ୍ର ପୁତ୍ର ବୋଲି ରୋଦନ କରନ୍ତେ ପ୍ରସନ୍ନ ହୋଇଲେ ହରି ।
ବୋଇଲେ ଗୋ ମାତା ମରି ନାହିଁ ସୁତ ପରକୁ କହୁଅଛି ନିନ୍ଦୁ ।
ଏହି ଟି ତୋ ପୁତ୍ର ଆମ୍ଭ କୋଳେ ଅଛି ବୃଥା କାହିଁପାଇଁ କାନ୍ଦୁ ।
ପ୍ରହଲ୍ଲାଦ କର ଧରି ଚକ୍ରଧର ଜନନୀ କୋଡ଼ରେ ଦେଲେ ।

ଏହିଟି ତୋ ପୁତ୍ର ଚିହ୍ନି ଘେନ ବୋଲି ଅନ୍ତର୍ଦ୍ଧାନ ହୋଇଗଲେ
ଏହିସବୁ କଥା ଦେଖିଣ ହିରଣ୍ୟ ଅତ୍ୟନ୍ତ କୁପିତ ହେଲା ।
ପୁତ୍ରକୁ ଗୃହରୁ କାଢ଼ି ଦିଅ ବୋଲି ଭାର୍ଯ୍ୟାକୁ ଗାଳିଦେଲା ।
ଅନେକ କଠୋର କରିଣ ଦନୁଜ ଅନ୍ତଃପୁରୁ ବାହୁଡ଼ିଲା ।
ଆରଦିନ ନିଶି ପ୍ରଭାତେ କୁମର ପାଠ ପଢ଼ିବାକୁ ଗଲା ।
ପୁଣିହି ପୁତ୍ରକୁ ମାରିବା ନିମନ୍ତେ ଖୋଜି ଅଛି ମହୀପାଳ ।
ବୁଲି ବୁଲି ଆସି ମଣ୍ଡପେ ଦେଖିଲା ଆକର୍ଷି ଧଇଲା ବାଳ ।
ଧରି ନୃପବର ହୋଇ କୋପଭର କମ୍ପୁ ଅଛି ପରଚଣ୍ଡ ।
କହିଲା ପାମର ଆଜି କାହିଁ ଯିବୁ ଖଡ଼ଗେ କାଟିବି ମୁଣ୍ଡ ।
ଶିବ ନାମ ଛାଡ଼ି କୃଷ୍ଣ ନାମ ଧରୁ ମୋର ବଚନ ନ ରଖୁ ।
କାହିଁ ଅଛି ତୋର ଦେବ ଚକ୍ରଧର ଏତେବେଳେ ଆସି ରଖୁ ।
କୁମର ବୋଇଲା, ଅଭଙ୍ଗଭଞ୍ଜନ ମୋର ପ୍ରଭୁ ନାମ ହରି ।
ଯେଣିକି ଚାହିଁଲେ ତେଣେ ଦିଶୁଛନ୍ତି ଘଟେ ଘଟେ ଛନ୍ତି ପୂରି ।
ବିଷ୍ଣୁ ମାୟାଧର ମହିମା ଅପାର ତାହାଙ୍କୁ ପାଇବ କାହିଁ ।
ମନେ କଲେ ଏହି ସ୍ତମ୍ଭରେ ଅଛନ୍ତି ଭକ୍ତକୁ ରଖିବା ପାଇଁ ।
ପୁତ୍ର ବୋଲ ଶୁଣି କ୍ରୋଧେ ନୃପମଣି ପାଦକେ ମାଇଲା ଆସି ।
ନୃସିଂହ ମୂରତି ସ୍ତମ୍ଭରୁ ବାହାରି ହିରଣ୍ୟକୁ ମାଡ଼ି ବସି ।
ବିକରାଳ ରୂପ ଲହ ଲହ ଜିହ୍ୱା ବୁଲାଇ ଶାରଙ୍ଗ ପାଣି ।
ବାମ କରେ ଧରି ଦନୁଜକୁ ଧରି ଜାନୁରେ ପାଡ଼ିଲେ ଆଣି ।
ପ୍ରଚଣ୍ଡ ବଦନ ଘୋର ଗରଜନ ଦାବାନଳ ପ୍ରାୟ ଆକ୍ଷି ।
ସ୍ୱର୍ଗ ଭୁବନ ଯେ କମ୍ପମାନ ହେଲା ସେହି ମୂରତିକି ଦେଖି ।
ବାଣ ସମ ତୀକ୍ଷ୍ଣ ଅଙ୍ଗୁଳି ନଖକୁ ଦନୁଜ ଗର୍ଭରେ ଭରି ।
ମହାବିଶ୍ୱମୂର୍ତ୍ତି ଧରି ନରହରି ହିରଣ୍ୟ ବକ୍ଷ ବିଦାରି ।
ହୃଦୟୁ ବିଦାରି କଣ୍ଠମୂଳ ଯାଏ ଅନାଇଁଲେ ଚଉବାହା ।
ଗର୍ଭର ଭିତରେ ରାମ ନାମ ଦିଏ ଗୋଚର ହୋଇଲେ ତାହା ।
ତହୁଁ ପଦ୍ମମୁଖ ମନେ ପାଇ ସୁଖ କିଞ୍ଚିତ ଶାନ୍ତ ହୋଇଲେ ।
ହିରଣ୍ୟ ଅନ୍ତକ ବିଦାରି ଆନନ୍ଦେ ଗଳାରେ ପଇତା କଲେ ।

ତେବେହେଁ ମନରେ ଆଜ ଶାନ୍ତ ନାହିଁ ବ୍ରହ୍ମାଣ୍ଡେ ପୂରିଛି କାୟା ।
ଶୁକ ସନକାଦ ବ୍ୟାସ ମହାମୁନ ନ ଜାଣନ୍ତି ଯାର ମାୟା ।
ସ୍ତୁତି କଲେ ଆଗେ ସକଳ ଦେବତା ଲକ୍ଷ୍ମୀଙ୍କି କୋଡ଼ରେ ଦେଇ
ନୃସିଂହ ମୂରତି ବଶ୍ୱରୂପ ତେଜ ଶାନ୍ତ ହୋଇଲେ ଗୋସାଇଁ ।
ପ୍ରଭୁଙ୍କୁ ଚାହିଁଣ ପ୍ରହ୍ଲାଦ କହୁଛି ମୋର ପିତା ମୁକ୍ତ ହେଉ ।
ସବୁଦନେ ତୁମ୍ଭ ଜାନୁରେ ପଡ଼ଣ ଶ୍ରୀମୁଖକୁ ଚାହିଁଥାଉ ।
ପ୍ରତିମା ଲିଖନ ଚିତ୍ରପଟେ ଆଦ ଆନ୍ଧ୍ର ପାଷାଣ ରେଖ ।
ତୁମ୍ଭେ ଯହିଁ ଥିବ ସେଠି ତହିଁ ଥିବ ଚାହୁଁ ଥିବ ପଦ୍ମମୁଖ ।
ଶ୍ରୀକୃଷ୍ଣ ବୋଇଲେ, ଯାହା ଅରଜିଛି ଅବଶ୍ୟ ଭୁଞ୍ଜିବ ତାହା ।
ତୋହର ପିତାର ମୁକତି ହୋଇଲା ଅଧିକ କହିବ କାହା ।
ପୂର୍ବର ଲାଗିଣ ଦାନବ ହିରଣ୍ୟ ଅସମ୍ଭବ ପୁଣ୍ୟ ପାଇ ।
ଆଜହିଁ ପ୍ରଭୁଙ୍କ ଜାନୁରେ ପଡ଼ିଣ ଶ୍ରୀମୁଖକୁ ଅଛି ଚାହିଁ ।
ସକଳ ଦେବତା ପ୍ରଭୁଙ୍କୁ କହିଣ ଯେ ଯାହା ପୁରକୁ ଗଲେ ।
ଅନ୍ତର୍ଯ୍ୟାମୀ ନାଥ ପ୍ରହ୍ଲାଦକୁ ଘେନ ବୈକୁଣ୍ଠରେ ବିଜେ କଲେ ।
ଉଦ୍ଧବ କହିଲେ, ଶୁଣ ଗୋପନାରୀ, ହିରଣ୍ୟ ରାଜାର ସୁତ ।
ତାଙ୍କର ମହିମା ପୃଥିବୀରେ ଧନ୍ୟ ଯେଣୁକର ପ୍ରଭୁଭକ୍ତ ।
ପୂର୍ବର ଶାପରୁ ଦାନୁଜ କୁଳରେ ଜନମ ସେ ଯେ ହୋଇଲେ ।
ନଜ ବାସନାକୁ ଘେନଣ ପ୍ରହ୍ଲାଦ ବସ୍ତୁ ପାଦେ ସେବା କଲେ ।
କୋଟି କୋଟି ବ୍ରତ କଲେ ପ୍ରହଲଦ ଭୋଜନ କିଛି ନ କରି ।
ଇନ୍ଦ୍ରିୟମାନଙ୍କୁ ନରୋଧ କରିଲେ ଏକାଦଶୀ ବ୍ରତ ଧରି ।
ସୂର୍ଯ୍ୟାସ୍ତ ସମୟେ ବିଶୁଦ୍ଧ ହୋଇଣ ପ୍ରଭୁଙ୍କ ପାଶକୁ ଗଲେ ।
ପୂର୍ବ ମୁଖେ ବସି ଷୋଡ଼ଶ ସହସ୍ର କୃଷ୍ଣନାମ ଜପ କଲେ ।
ଦୁଇ ଜଙ୍ଘେ ବେନ ଦୀପ ଆରୋପିଣ କରେ ବେନ ଦୀପ ଘେନ
ସ୍କନ୍ଧମୂଳେ ଦୁଇ ଦୀପକୁ ବସାଇ ଦୀପେକ ଜାଳ ମୂର୍ଦ୍ଧନ ।
ପୁଣ୍ଡି ଗବ୍ୟଘୃତ ଦୀପ ଗୋଟେ ସତ ପ୍ରଭୁଙ୍କ ସମ୍ମୁଖେ ଜାଳ ।
ସମ ରଜନୀରେ ଜାଗ୍ରତ ହୋଇଣ ଏକାଦଶୀ ବ୍ରତ ପାଳ ।
ଅନେକପ୍ରକାରେ ବନୟ ହୋଇଣ ପାଦପଦ୍ମ ଧ୍ୟାନ କଲେ ।

ଭକ୍ତବତ୍ସଳ ହୋଇଣ ନିର୍ମଳ ବର ମାଗ ଆଜ୍ଞା ଦେଲେ ।
ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ, ଅନ୍ୟବରରେ ନାହିଁ କାର୍ଯ୍ୟ ।
ପ୍ରତିଜନ୍ମେ ତୁମ୍ଭ ପାଦପଦ୍ମ ଧୂଳି ସେବୁଥିବି ନେବସଜ ।
ଶ୍ରୀକୃଷ୍ଣ ବୋଇଲେ, ଅନେକପ୍ରକାରେ ଆମ୍ଭଙ୍କୁ କଲୁ ତୁ ସେବା ।
ତେଣୁକରି ତୋତେ ସ୍ୱର୍ଗପୁରେ ଆମ୍ଭେ ଇନ୍ଦ୍ରପଦେ ଶାନ୍ତିଦେବ
ଚରଣେ ଖଟିବେ ଅନେକ ଦେବତା ଲଭିବୁ ଅନେକ ଯଶ ।
ଶଚୀଙ୍କ ସଙ୍ଗତେ ଅଭିଷେକ ହୋଇ ସୁରପତି ପଦେ ବସ ।
ଶ୍ରୀକୃଷ୍ଣ ବଚନେ ପ୍ରହ୍ଲାଦ ବୋଇଲେ ଇନ୍ଦ୍ରପଦ ମୋର ନୋହୁ ।
ତୁମ୍ଭ ପଦ୍ମପାଦେ ସଦା ଚିତ୍ତ ଥିବ ଏହି ଆଜ୍ଞା ମୋତେ ହେଉ ।
ଶ୍ରୀକୃଷ୍ଣ କହିଲେ, ଏ ବର କମ୍ପାଇଁ ନାସ୍ତି କଲୁ ପ୍ରହ୍ଲାଦ ।
ହୋଇଅଛୁ ସ୍ଥିର ପୂର୍ବରୁ ଆମ୍ଭର ତୋତେ ଦେବା ଇନ୍ଦ୍ରପଦ ।
ଶ୍ରୀକୃଷ୍ଣଙ୍କ ବାଣୀ ଶୁଣି ପ୍ରହ୍ଲାଦ ବେଗେ ସ୍ୱର୍ଗପୁର ଗଲେ ।
ଅନ୍ତଃପୁରେ ଇନ୍ଦ୍ର ଅଛନ୍ତି ଜାଣିଣ ସିଂହାସନେ ବସନ କଲେ ।
ଦେଖି ଦେବଲୋକ ହାସ୍ୟ କଲେ ତାଙ୍କୁ ଇନ୍ଦ୍ରଙ୍କୁ କହିଲେ ଯାଇଁ
ମନୁଷ୍ୟ ଗୋଟିଏ ଆସ୍ଥାନେ ବସିଛି ଶୁଣିମା ହେଉ ଗୋସାଇଁ ।
ଏମନ୍ତ ପୁରୁଷ ନ ଥିବ ସ୍ୱର୍ଗରେ କିସ ପଟାନ୍ତର ଦେବା ।
କୋଟିଏ କନ୍ଦର୍ପ ପ୍ରାପ୍ତ ହେବ ରୂପ ନବୀନ ସୁନ୍ଦର ଯୁବା ।
ମଘବା କହିଲେ, ଏତ ବିପରୀତ ଉପୁଜିଲେ ଅବା ବଡ଼ ।
ମର୍ତ୍ତ୍ୟର ମାନବ ସ୍ୱର୍ଗକୁ ଆସିଲା ହାରୁକା ମାରି ଘଉଡ଼ ।
ସୁରପତି ବାଣୀ ଦେବଲୋକେ ଶୁଣି ଆସିଲେ ଉଚ୍ଚ ବାହୁଡ଼ି ।
ବହୁତ ନିନ୍ଦଣ ପ୍ରହ୍ଲାଦ ବୀରକୁ ସ୍ଥାନରୁ ଦେଲେକ କାଢ଼ି ।
ସେଠାରୁ ଆସିଣ ବୀର ପ୍ରହ୍ଲାଦ ପ୍ରଭୁଙ୍କୁ ଯାଇଁ କହିଲେ ।
ହେ ପ୍ରଭୁ ! ଆମ୍ଭଙ୍କୁ ସ୍ୱର୍ଗ ଦେବଲୋକେ ଅସ୍ଥାନୁ ଘଉଡ଼ିଦେଲେ
ଆପଣଙ୍କ ଆଜ୍ଞା ଶିରରେ ଧରିଣ ସ୍ୱର୍ଗ ଭୁବନକୁ ଗଲି ।
ଯେଉଁ ବର ଦେଲେ ସଫଳ ନୋହିଲା ବୃଥାରେ ଗର୍ବ ହରାଇଲି
ପ୍ରହ୍ଲାଦର ବାଣୀ ଶୁଣି ଚକ୍ରପାଣି ବିଚାର କରନ୍ତି ଚିତ୍ତେ ।
କହିଲେ, ଦେବଙ୍କ ଗରବ ଗଞ୍ଜିବି ଆପଣା ସେବକ ହିତେ ।

ଶୁଣ ହେ ପ୍ରହ୍ଲାଦ ! ଅପମାନ ଦେଲେ ଭାବନା କିଛି ନ କର ।
ମୁହିଁ ଯାଇ ତାଙ୍କ ଗର୍ବକୁ ଗଞ୍ଜିବି ମୋର ନାମ ମାୟାଧର ।
ଏମନ୍ତ ବଚନ କହିଲେ ଶ୍ରୀକୃଷ୍ଣ କଥାଏ ମାଗିବି ତୋତେ ।
ତୋହର ଯେମନ୍ତ ଦେବାକୁ ଶରଧା ସତ୍ୟ କରିଥାଅ ମୋତେ ।
ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ, କି ସତ୍ୟ କରିବି ମୁହିଁ ।
ଶ୍ରୀକୃଷ୍ଣ ବୋଇଲେ,ଅନ୍ୟ କାର୍ଯ୍ୟ ନାହିଁ, ଅମ୍ଭ ପାଦ ଥାଅ ଛୁଇଁ
ଶୁଣିଣ ବଚନ ପ୍ରଭୁ ପଦ୍ମପାଦେ ଶିର ଲଗାଇ ଛୁଇଁଲେ ।
ଯାହା ଆଜ୍ଞା ହେବ ତାହା ମୁହିଁ ଦେବି ପ୍ରହ୍ଲାଦ ଏହା କହିଲେ
ଶ୍ରୀକୃଷ୍ଣ ବୋଇଲେ, ଅମ୍ଭ ଆଜ୍ଞା ପାଇ ଇନ୍ଦ୍ର ହୋଇବାକୁ ଗଲ ।
ଋଷି ଦେବତାଏ ଅର୍ଚ୍ଚନା ନ କଲେ ଅମ୍ଭଙ୍କୁ ନ ହେଲା ଭଲ ।
ଦେବତାମାନେ ଯେ ହିଂସକ ଅଟନ୍ତି ଗୁଣ ନ ଜାଣିଲେ ତୋର
ଅମ୍ଭେ ନ ମାନିଲେ କେ ତୋତେ ମାନିବ ଶୁଣ ହେ ପ୍ରହ୍ଲାଦବୀର
ଏବେ ଚାଲ ଯିବା ସ୍ୱର୍ଗପୁରେ ଥିବା ଦେଖନ୍ତୁ ଦେବତାଗଣ ।
ଦେଖ ଲୋଚନରେ ସର୍ବେ ଦେଖୁଥିବେ ତୋତେ ଦେବ ଇନ୍ଦ୍ରପଣ
ଅମ୍ଭେ ଯେତେବେଳେ ଆସନେ ବସାଇ ଇନ୍ଦ୍ର ପଦ ଦେବୁଁ ତୋତେ
ତେତେବେଳେ ଅମ୍ଭେ ପ୍ରଣାମ କରିବୁଁ ଭୟ ନ କରିବୁ ଚିତ୍ତେ ।
ପ୍ରଭୁଙ୍କର ବାଣୀ ପ୍ରହ୍ଲାଦ ଶୁଣି ଚକିତ ହୋଇ ରହିଲେ ।
ଜିହ୍ୱା କାମୁଡ଼ିଣ ତରତର ହୋଇ ଶିରରେ ହସ୍ତ ମାଇଲେ ।
ରାମ ନାମ ଧରି ଗୋବିନ୍ଦ ସୁମରି ଶିରରେ ଯୋଡ଼ିଲେ କର ।
ପ୍ରହ୍ଲାଦ କହିଲେ, ଇନ୍ଦ୍ରପଦେ ମୋର କାର୍ଯ୍ୟନାହିଁ ଚକ୍ରଧର ।
ଅଶେଷ ବ୍ରହ୍ମାଣ୍ଡେ ଯେ ପ୍ରଭୁ ଠାକୁର ସକଳ ଜୀବ କାରଣ ।
ସେହି ମୋତେ ଯେବେ ପ୍ରଣାମ କରିବେ ଅବଶ୍ୟ ହେବ ମରଣ
ଧିକ ମୋ ଜୀବନ ଜୀଇଥିବା ଛାର ପିତା ମାତା ବନ୍ଧୁଗଣ ।
ତୁମ୍ଭ ଶ୍ରୀମୁଖରୁ ଏହି ଆଜ୍ଞା ହେଲା ପୋଡ଼ୁ ମୋ ଭକତପଣ !
ପ୍ରହ୍ଲାଦ ବାଣୀ ଶୁଣି ଚକ୍ରପାଣି କହିଲେ କିପାଇଁ ଡର ।
ଯେତେବେଳେ ତୁମ୍ଭେ ସତ୍ୟ କରିଅଛ ଏବେ କିପାଁ ନାସ୍ତିକର
ଅମ୍ଭ ପାଦ ଛୁଇଁ ସତ୍ୟ କରିଅଛ ଏବେ ତ ନାସ୍ତି ନୋହିବ ।

ତୁମ୍ଭେ ଅମ୍ଭଠାରେ ଦ୍ରୋହପଣ କଲେ ଅଳ୍ପଦିନେ ନାଶ ଯିବ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ମୁହିଁଟି ସମସ୍ତ ତାତ ।
ମୋହର ନ ଥିଲା ଦ୍ରବ୍ୟ ଅଛି କାହିଁ ଶୁଣ ତୁ ହିରଣ୍ୟ ସୁତ ।
ମୁହିଁ ମୋତେ ନେଇ ମୁହିଁ ମୋତେ ପାଇ ମୁହିଁ ମୋର ସୁଖେ ରହି
ମୁହିଁ ମହାମାୟୀ ସଂସାରେ ପଡ଼ିଣ ମୁହିଁ ଗାଞ୍ଜି ହେଉଥାଇ ।
ମୁହିଁ ମୋତେ ବନ୍ଦି ମୁହିଁ ମୋତେ ମଣ୍ଡି ମୁହିଁ ମୋର ସୁଖେ ଭଲ
ମୁହିଁ ମୋ ବାନ୍ଧବ ମୁହିଁ ମୋ ମଇଜ ମୁହିଁ ମୋତେ ହୋଇସଲ
ସମସ୍ତଙ୍କ ଧନ ସମସ୍ତ ଜୀବନ ସମସ୍ତ ବ୍ୟାପାର ମୁହିଁ ।
ତେଣୁକରି ତୋତେ ଓଲଟି ହୋଇବ ଆମ୍ଭର ଭାବନା ପାଇଁ ।
ତୋହ ମସ୍ତକରେ ଅମ୍ଭର ନାମର ଶ୍ରୀହରି ମନ୍ଦର ଥିବ ।
ଅମ୍ଭେ ନମସ୍କାର ତହିଁକି କରିବୁଁ ତୋତେ କ୍ଷମା ବୋଧ ହେବ
ଏବେ ଯେ ସ୍ୱର୍ଗରେ ଇନ୍ଦ୍ର ହୋଇଅଛି ସେହି ଗାଞ୍ଜି ହୋଇ ମରୁ
ଅମ୍ଭେ ନମସ୍କାର ଅମ୍ଭଙ୍କୁ ହୋଇବୁଁ ତହିଁରେ କ୍ଷମାଇ ଡ଼ରୁ ।
ଶୁଣି ପ୍ରହ୍ଲାଦ କରିଣ ବିଷାଦ ମନେ ମନେ ଶାନ୍ତ ହେଲେ ।
ଶ୍ରୀମୁଖ ବଚନ କେମନ୍ତେ ଭାଙ୍ଗିବି ଅଗତ୍ୟା ସ୍ୱୀକାର କଲେ ।
ଭକତର ବାଣୀ ଶୁଣି ଚକ୍ରପାଣି ସେହିକ୍ଷଣି ସଜ ହେଲେ ।
ପ୍ରହ୍ଲାଦ ସଙ୍ଗେ ଘେନିଣ ଶ୍ରୀକୃଷ୍ଣ ଇନ୍ଦ୍ରପୁରେ ବିଜେ କଲେ ।
ଦେଖି ଦେବଋଷି ସମସ୍ତେହେଁ ବର୍ଷ ବର୍ଣ୍ଣନ କରନ୍ତି ତହିଁ ।
କାଖେ ହସ୍ତଦେଇ ଠିଆ ହୋଇଛନ୍ତି ପ୍ରଭୁଙ୍କ ମୁଖକୁ ଚାହିଁ ।
ବରୁଣ କୁବେର ବଶଦିଗପାଳ ସମସ୍ତେ ମଉନବର୍ତ୍ତୀ ।
କେହି କାହାକୁହିଁ କଥା ନ କହନ୍ତି ଡରେଣ କାଳର ମତି ।
ଦେବତାମାନଙ୍କୁ ଦେଖି କୃପାସିନ୍ଧୁ ଜମ୍ବୁ ଶଙ୍ଖଧ୍ୱନି କଲେ ।
ଦୁଇ ବାହୁରେଟି ପ୍ରହ୍ଲାଦକୁ ଧରି ସିଂହାସନେ ବସାଇଲେ ।
ବିବିଧ ଫୁଲରେ ଗୁନ୍ଥି ଧନ୍ୟମାଳ ପ୍ରହ୍ଲାଦ ଶିରରେ ଦେଲେ ।
ପଞ୍ଚମୀ ପାଟରେ ନବରତ୍ନ ଖଞ୍ଜି ମନୋହର ବେଶ କଲେ ।
ମୁକୁତା ଜାଲରେ ମାଣିକ୍ୟ ଖଞ୍ଜିଲେ ଝଲମଲ ବିରାଜୁଛି ।
ପ୍ରହ୍ଲାଦଙ୍କ କଣ୍ଠେ ମୁକୁତାର ମାଳା ଦିବ୍ୟ ଶୋଭା ପାଉଅଛି ।

ଶରୀରେ କସ୍ତୁରୀ ଚନ୍ଦନ ଲଗାଇ ନିର୍ମାଣିଲେ ଜଗଜ୍ଜିତା ।
ପ୍ରହ୍ଲାଦ ମସ୍ତକ ଉପରେ ଲେଖିଲେ ଶ୍ରୀହରି ମନ୍ଦର ଚିତ୍ର ।
ଆସନ ଉପରେ ସୁବେଶ କରିଣ ବସାଇଲେ ଚକ୍ରଧର ।
ଅନନ୍ତ ବୃନ୍ଦକୁ ପଞ୍ଚଧୂଆ ନେଇ ଭକ୍ତକୁ ପୋଡ଼ିଲେ କର ।
ନମଃ ଇନ୍ଦ୍ର ବୋଲି ଶ୍ରୀମୁଖେ ଉଚ୍ଚାରି ଠିଆହେଲେ ଭବଗ୍ରାହୀ ।
ସକଳ ଦେବତା ପାଦରେ ପଡ଼ିଲେ ପ୍ରହ୍ଲାଦ ମୁଖ ଚାହିଁ ।
ପୁଣିହିଁ ଉଠିଣ ଶିରେ କର ଯୋଡ଼ି ସ୍ତବକଲେ ସେ ପାଦାରେ ।
ଜୟ ଜୟ ଶଙ୍ଖ ଶବଦ ଶୁଭିଲା ଅମର ଦେବ କୁଳପୁରେ ।
ଶଙ୍ଖ ଶବ୍ଦ ଶୁଣି ଶଚୀଙ୍କ ସଙ୍ଗରେ ଅନ୍ତଃପୁରୁ ଇନ୍ଦ୍ର ଗଲେ ।
କାତର ମନରେ ଥରଥର ହୋଇ ପ୍ରଭୁଙ୍କୁ ଦର୍ଶନ କଲେ ।
ଶିରେ କରଯୋଡ଼ି ବିନୟ ହୋଇଲେ ପ୍ରଭୁଙ୍କ ମୁଖକୁ ଚାହିଁ ।
ଅଶେଷ ବ୍ରହ୍ମାଣ୍ଡ ଠାକୁର ହୋଇଣ ଅଜ୍ଞାନ୍ତି କଲ ଗୋସାଇଁ ।
ଅଷ୍ଟାଦଶ ଯୁଗ ଇନ୍ଦ୍ରପଦେ ଥିବି ଶ୍ରୀମୁଖରେ ଆଜ୍ଞା ଦେଲ ।
କେଉଁ ଦୋଷ କଲି ବିଚାର ନ କରି ନୂଆ ଇନ୍ଦ୍ର କିମ୍ପା କଲ ।
ସହସ୍ର ବରଷ ରଜନୀ ଦିବସ ପୁଣ୍ୟକୁ କରିଛି ଖେଦ ।
ଅନେକ ଜନ୍ମ ମୁଁ ତୁମ୍ଭ ପାଦେ ସେବି ଲଭିଅଛି ଇନ୍ଦ୍ରପଦ ।
କୋଟି କୋଟି ଯଜ୍ଞ କୋଟି କୋଟି ତପ ଧର୍ମ ସାଧନକୁ କଲି ।
କଳ୍ପପରି ଗୁଣ ଶତଯୁଗ ଯାଏ ଦଶମନ୍ତ୍ର ଉଚ୍ଚାରିଲି ।
ତାହ ଅନ୍ତେ ପୁଣି ମନେ ମନେ ଗୁଣି ଅନୁଭବ କଲି ବୋଧ
ପଞ୍ଚଦଶ ଜନ୍ମ ପୁଣି ମୁଁ ସାଧିଲି ବ୍ରହ୍ମଜ୍ଞାନ ଉପଦେଶ ।
ସହସ୍ର ବରଷ ଅନ୍ନକୁ ନ ଭଷି ପବନ ଆହାର କଲି ।
ଲୁହା ଚଣା ଖାଇ ଅଷ୍ଟମ ବରଷ ଅଗ୍ନିରେ କାୟା ବହିଲି ।
ତେତେବେଳେ ମୋତେ ପ୍ରସନ୍ନ ହୋଇଲେ ମହାଘୋର ତପ ଦେଖି
ସୁରପତି ପଦେ ବର ଯାଚିଦେଲେ ଅଠର ଯୁଗକୁ ଲେଖି ।
ଶ୍ରୀମୁଖ ଆଜ୍ଞାରେ ଦେବପୁର ଯାଏ ଦିବ୍ୟ ଘରେ ନିନ୍ଦ୍ରହେଲି ।
ଏ ଅବା ତୁମ୍ଭଙ୍କୁ କେଉଁ ସେବା କଲେ ମୁହିଁକି ସେବା ନ କଲି ।
ପ୍ରଭୁ କହିଲେ ମୋ ନାମ ପୂର୍ଣ୍ଣାନନ୍ଦ ଘଟେ ଘଟେ ଅଛୁ ପୂରି ।

ନୀଚ ହୋଇ ଯେବେ ସେ ନାମ ଧରିବ ତାହାଙ୍କୁ ପ୍ରସନ୍ନ ହରି ।
ନିର୍ମଳ ମନରେ ଇନ୍ଦ୍ରିୟ ନିରୋଧି କରୁଥାଅ ସଦା ସେବା ।
କିଛି ଦିନାନ୍ତରେ ଭକ୍ତିଭାବ ଦେଖି ସେ ପଦ ତୁମ୍ଭଙ୍କୁ ଦେବା ।
ଇନ୍ଦ୍ର କହିଲେ, ମୁଁ ୍‌ତେତ ତପ କରି ଅଗାଧକ କଷ୍ଟ ଯିବ ।
ସନ୍ନୀ ହୋଇ କଷ୍ଟ ନିର୍ବଳ ହୋଇବ ଯୁଦ୍ଧରେ ପଛେ ମରିବ ।
ଏ ଯେତେବ ସ୍ୱର୍ଗରେ ସୁରପତି ହେବ ସଂଗ୍ରାମ କରୁ ମୋ ତୁଲେ ।
ସମରେ ସେମୋତେ ଜିଣିଯେବେ ପାରେ ଇନ୍ଦ୍ରପଦ ଯେହ୍ନୁ ହେଲେ
ଏମନ୍ତ କହିଣ ଶରାସନ ନେଇ ନାରାଚ ହସ୍ତେ ଧଇଲେ ।
ପ୍ରଭୁଙ୍କ ସମ୍ମୁଖରେ ପ୍ରହ୍ଲାଦ ବୀରଙ୍କୁ ଶଚୀନାଥ କୋପ କଲେ ।
ଦେବତାଙ୍କୁ ଚାହିଁ ଶ୍ରୀକୃଷ୍ଣ କହିଲେ ମନ୍ତ୍ର ସ୍ମରି ତୁମ୍ଭେ ଧାଇଁ ।
ଏକମୁଖ ହୋଇ ଇନ୍ଦ୍ର ଦେବତାଙ୍କୁ ଘଉଡ଼ି ମାରି ହାଙ୍କା ।
ପ୍ରଭୁଙ୍କର ବାଣୀ ଦେବତାଏ ଶୁଣି କୋପକଲେ ଅନ୍ତ ପାରି ।
ଅନ୍ତଃପୁରେ ଇନ୍ଦ୍ର ପ୍ରବେଶ ହୋଇଣ ଶଚୀଙ୍କି କହିଲେ ଯାଇଁ ।
ହେ ସୁରସୁନ୍ଦରୀ ସାବଧାନ ହୋଇ ଆମ୍ଭର କଥାକୁ ଶୁଣ ।
ପଚୋମିତ୍ର ତୁମ୍ଭ ଆଗେ ମୁଁ କହିବ ପ୍ରଭୁଙ୍କର ଯେଉଁ ଗୁଣ ।
ନୂଆ ଇନ୍ଦ୍ର କରି ମୋତେ କାଢ଼ି ଦେଲେ ତୁମ୍ଭଙ୍କୁ କରିବେ ନାଶ
ମୋହରଠାରେ ଯେବେ କାମିଅଛୁ ତୋର ପଳାଇଯିବା ଗୋ ଆସ
ଶଚୀ ଦେବୀ ଶୁଣି ମନେ ମନେ ଗୁଣି କହିଲେ ହୋଇ ହରଷ ।
ତୁମ୍ଭ ସମ କୋଟି କୋଟି ଇନ୍ଦ୍ର ଗଲେ ମୋହର ହୋଇବ କସ ।
ଏକା ଚନ୍ଦ୍ରଧର ଥିଲେ ସ୍ୱର୍ଗପୁର ଆନଙ୍କୁ ମୋ ଭୟ ନାହିଁ ।
ଲକ୍ଷ ଲକ୍ଷ ଇନ୍ଦ୍ର ଏହିପରି ଗଲେ ନବଯୁବତୀ ମୁଁ ଥାଇ ।
ଏହାର ପୂର୍ବେ ଯେବେ ଅମରମଣ୍ଡଳେ ନାରାୟଣ ଅବତାରେ ।
ମୁଁ ଥିଲି ଅଠାଶୀ ଲକ୍ଷ ଇନ୍ଦ୍ର ଗଲେ ପଞ୍ଚାଶ ଯୁଗ ଭିତରେ ।
ତେବେହେଁ ମୋହର ନବଯଉବନ ଶରୀରେ ନ ଠେଲିଲା ଭଲେ ।
କାଳି ପ୍ରାୟେ ମୋତେ ସେ କଥା ଲାଗୁଛି କେତେ ସୁରପତି ଗଲେ
ଶଚୀଙ୍କର ବାଣୀ ଇନ୍ଦ୍ରଦେବ ଶୁଣି ନିରାଶ ହୋଇ ଅଛିଲେ ।
ପ୍ରଭୁଙ୍କ ଭୟରୁ ସ୍ୱର୍ଗରେ ନ ରହି କୁସୁମବନେ ଲୁଚିଲେ ।

ଏଥୁଅନନ୍ତରେ ସୁଧର୍ମା ସଭାରେ ପ୍ରହ୍ଲାଦର ଇନ୍ଦ୍ରିପଣ ।
ଦୀନକୃଷ୍ଣ ଦାସ ସେ ପାବେ ଶରଣ ସାଧୁଜନମାନେ ଶୁଣ ।



## ଦ୍ୱିତୀୟ ଛାନ୍ଦ

ଆଦଶେ ଶ୍ରୀହରି ଭକ୍ତ ନାମ ଧରି ଇନ୍ଦ୍ରପଦେ ଶାନ୍ତିଦେଲେ ।
ଦେବତା ଋଷିଙ୍କି ସମର୍ପି ଦେଇଣ ଅନ୍ତର୍ଦ୍ଧାନ ହୋଇ ଗଲେ ।
ତଦନ୍ତରେ ବୀର ପ୍ରହ୍ଲାଦ କୁମର ସ୍ୱର୍ଗ ସମ୍ପଦକୁ ରସି ।
ଶଚୀଙ୍କୁ ଘେନିଣ ଅଭିଷେକ ହେଲେ ଅମର ଆସ୍ଥାନେ ବସି ।
ଯଥାବିଧି କର୍ମ ଧର୍ମ ଆଚରଣ ମନ୍ୱନ୍ତର ଇନ୍ଦ୍ରପଣେ ।
ପୂର୍ବର ବାସନାବଳେ ଭୋଗ କଲେ ଶ୍ରୀକୃଷ୍ଣଙ୍କ ସେବାଗୁଣେ ।
ଏଥୁଅନନ୍ତରେ ସୁରପତି ପୁରେ ପ୍ରଭୁ ଦିନେ ବିଜେ କଲେ ।
ପଶା ଖେଳୁଛନ୍ତି ଶ୍ରୀକୃଷ୍ଣ ଦେଖିଲେ ପ୍ରହ୍ଲାଦ ଶଚୀଙ୍କ ତୁଲେ ।
ସମ୍ମୁଖେ ଗନ୍ଧର୍ବ ଛନ୍ତି ଛନ୍ତି ସର୍ବ ନୃତ୍ୟରସେ ଗୀତ ଟାଇ ।
ମହର୍ଷି ନାରଦ ବୀଣା ଯନ୍ତ୍ର ଧରି ନାଚନ୍ତି ଆନନ୍ଦ ହୋଇ ।
ରମ୍ଭା ମେନକାଦି ରମଣୀ ନାଚନ୍ତି ତାଣ୍ଡବ ନୃତ୍ୟରେ ଖଟି ।
ଝର୍ଝରି କଂସାଳ ବାଜୁଅଛି ତାଳ ନାଚନ୍ତି ଅମର ନଟୀ ।
ଏମନ୍ତ ସମୟେ ଦେବତାଙ୍କ ରାଜା ପ୍ରବେଶ ହୋଇଲେ ଯାଇ ।
ଦେଖିଣ ସମସ୍ତେ ଶିରେ କରଯୋଡ଼ି ଗୋବିନ୍ଦ ମୁଖକୁ ଚାହିଁ ।
କୁମର ପ୍ରହ୍ଲାଦ ପାଇ ଇନ୍ଦ୍ରପଦ ପଶାଖେଳେ ଅଛି ମନ ।
ଶଚୀ ସହିତରେ ପଶା ଖେଳୁଛନ୍ତି ପ୍ରଭୁଙ୍କୁ ନାହିଁ ଚେତନ ।
ଦେଖି ଚକ୍ରପାଣି ମନେ ମନେ ଗୁଣି ବିଚାରନ୍ତି ମହାବାହୁ ।
ମୋହର ଭକତ ମୋତେ ନ ଚିହ୍ନିଲା କାହାକୁ କହିବ ଆଉ ।
ମନରେ ଶ୍ରୀକୃଷ୍ଣ ଏମନ୍ତ ଭାବିଣ ନାରଦଙ୍କୁ ଗଲେ ପାଶ ।
ବୋଲେ ତୁମ୍ଭ ଆଗେ କଥାଏ କହିବା ଶୁଣ ହେ ବ୍ରହ୍ମାଙ୍କ ଶିଷ୍ୟ ।
ଆମ୍ଭ ଆଜ୍ଞା ନେଇ ପ୍ରହ୍ଲାଦଙ୍କଠାରେ ଶୀଘ୍ର ଜଣାଇବ ଯାଇଁ ।
ସମ୍ପଦପଟଳ ଚକ୍ଷୁରେ ପଡ଼ିଲା ଆମ୍ଭଙ୍କୁ ଚିହ୍ନିଲା ନାହିଁ ।
ଶ୍ରମ କରି ଆସୁ ଆସନ ନ ଦେଲା ମନରେ ହେଲା ବିଷାଦ ।

ପ୍ରହରେ ପର୍ଯ୍ୟନ୍ତେ ଠିଆ ହେଲୁଁ ଆମ୍ଭେ ବ୍ୟଥା କଲା ପଦ୍ମପାଦ
ତୁମ୍ଭେ ଅନୁଭକ୍ତ ତୁମ୍ଭେ ପ୍ରାଣହିତ କାହାକୁ ବୋଲିବା କିସ ।
ଏମନ୍ତ ବୋଲିଣ ଅମର ବୈକୁଣ୍ଠ ବିଜେ କଲେ ଲକ୍ଷ୍ମୀଈଶ ।
ମହର୍ଷି ନାରଦ ପ୍ରଭୁ ବାଣୀ ଶୁଣି ଇନ୍ଦ୍ରଙ୍କୁ କହିଲେ ଯାଇଁ ।
ଇନ୍ଦ୍ର ସମ୍ପତ୍ତିରେ ମୋହିତ ହୋଇଣ ପ୍ରଭୁଙ୍କୁ ଚିହ୍ନିଲ ନାହିଁ ।
ପ୍ରହରେ ପର୍ଯ୍ୟନ୍ତେ ପ୍ରଭୁ ଠିଆହେଲେ ପଦ୍ମପାଦ କଲା ବ୍ୟଥା ।
ଯିବାବେଳେ ମୋତେ ପାଶକୁ ଡାକାଇ କହିଲେ ସକଳ କଥା ।
ନାରଦଙ୍କ ବାଣୀ ସୁରପତି ଶୁଣି ମନେ ମନେ ହେଲେ ଭ୍ରାନ୍ତି ।
ଓଷ୍ଠ କଣ୍ଠ ଜିହ୍ୱା ଶୁଖି ଭ୍ରମିଗଲା ମୁଖରେ ପଡ଼ିଲା କାଳି ।
ଶ୍ରବଣଦେଶକୁ ପ୍ରଜ୍ୱାଳ ଛୁଇଁଣ ବିସ୍ମୟ ହୋଇ ରହିଲା ।
ଶ୍ରୀକୃଷ୍ଣଙ୍କଠାରେ ଅପରାଧ କଲି ଧାତା ମୋତେ ବାମହେଲୁ ।
ଧିକ ମୋ ଜୀବନ ନବ ଯଉବନ ପିତା ମାତା ପଞ୍ଚପ୍ରାଣ ।
ଯୋଉ ଇନ୍ଦ୍ରପଦ ଯୋଉ ମୋ ସମ୍ପଦ ଯୋଉ ମୋ ଭକତପଣ ।
ଇନ୍ଦ୍ର ପଦକୁ ମୁଁ ଭାଜନ ନୋହିଲି ଆଉ କାହାଁ ସ୍ୱର୍ଗେ ଥିବି ।
ପ୍ରଭୁଙ୍କ ପାଦରେ ଅପରାଧ କଲି ଦେଶାନ୍ତର ହୋଇ ଯିବି ।
ଏମନ୍ତ କହିଣ ଇନ୍ଦ୍ର ପ୍ରହ୍ଲାଦ ଛାଡ଼ିଲେ ସ୍ୱର୍ଗର ଆଶା ।
କନ୍ଥା କଉପୀନ ବିଭୂତି ଭୂଷଣ ଧଇଲେ ସନ୍ନ୍ୟାସୀ ବେଶ ।
ବିଷ୍ଣୁ ପୁରାଣକୁ କାଖରେ ଯାକିଣ ଜିବଦ୍ରା ଧରିଣ କରେ ।
ତୁଳସୀମାଳାକୁ ହୃଦରେ ଲମ୍ବାଇ ବାନ୍ଧିଲେ ଜଟ ଶିରରେ ।
ଯତି ବେଶ ଧରି ହୃଦରେ ବିଚାରି ସେଠାରୁ କଲେ ଗମନ ।
ଏମନ୍ତ ଦେବତା କେଉଁଠାରେ ଅଛନ୍ତି ଦୁଃଖୀ ଲୋକଙ୍କର ଧନ ।
ଭକ୍ତଙ୍କ ଜୀବନ ଯଶୋଦା ନନ୍ଦନ ଯେ ଯେବେ କଲେଣି ରୋଷ
ତାହାଙ୍କ ପାଖରେ ସେବା କଲେ ସିନା ଖଣ୍ଡିବେ ମୋହର ଦୋଷ
ଏମନ୍ତ ବୋଲିଣ ଇନ୍ଦ୍ର ପ୍ରହ୍ଲାଦ ଆପଣା ହୃଦେ ଭାଳିଲେ ।
ଶ୍ରୀକୃଷ୍ଣଙ୍କ ନାମ ଅନ୍ତର୍ଗତେ ଧରି ବୈକୁଣ୍ଠ ପ୍ରବେଶ ହେଲେ
ଦେଖି ଥିଲେ ଜୟ ବିଜୟ ବୋଲିଣ ବୈକୁଣ୍ଠରେ ଦ୍ୱାରପାଳ ।
ତାହାଙ୍କ ଆଗରେ ପହଞ୍ଚିଲେ ଯାଇଁ ହରଷା ଗଳା ଦୁଲାଲ ।

ଦ୍ୱାରୀଙ୍କି ରୁକ୍ମିଣୀ କହିଲେ ବଚନ ତୁମ୍ଭେ ଯାଅ ଶୀଘ୍ର ହୋଇ ।
ଆସିଛନ୍ତି ଗୋଟିଏ ଉଦାସୀ ପୁରୁଷ ପ୍ରଭୁଙ୍କଠାରେ କହ ଯାଇଁ ।
ପ୍ରହ୍ଲାଦଙ୍କ ବାଣୀ ଦ୍ୱାରପାଳ ଶୁଣି କହିଲେ ଶୁଣ ଗୋସାଇଁ ।
ତୁମ୍ଭର କି ନାମ ଅମ୍ଭେ ତ ନ ଜାଣୁ କି ବୋଲି ବୋଲିବୁଁ ଯାଇ ।
ଆମ୍ଭ କଥା ଶୁଣି ପ୍ରଭୁ ଚକ୍ରପାଣି ନ ଜାଣି କରିବେ କୋପ ।
ତେତେବେଳେ ଅମ୍ଭେ ଅନାଥ ହୋଇବୁଁ ତୁମ୍ଭଙ୍କୁ ଲାଗିବ ପାପ ।
ଦ୍ୱାରୀଙ୍କ ବଚନେ ଭକ୍ତ ପ୍ରହ୍ଲାଦ ଲେଖନ ପତ୍ର ଧରିଲେ ।
ଶ୍ରୀକୃଷ୍ଣଙ୍କଠାରେ ବିନୟ କରିଣ ଗୋଟିଏ ସ୍ତବ ରଚିଲେ ।
ଜୟ ଜୟ ଜୟ କମଳାରମଣ ସକଳ ସୃଷ୍ଟି କାରଣ ।
ନାଭିରୁ ବିରିଞ୍ଚି ଜନମ ହୋଇଣ ଅନ୍ତ ନ ପାଇଲେ କାଣ ।
ଘନଶ୍ୟାମ ମୂର୍ତ୍ତି ଲକ୍ଷ୍ମୀଦେବୀ ପତି ଆତଙ୍କଭଞ୍ଜନ ନାଥ ।
ପାଦରୁ ଜନମ ଗଙ୍ଗା ହୋଇଛନ୍ତି ରବି ଚନ୍ଦ୍ର ନେତ୍ର ଜାତ ।
କଣ୍ଠତଟୁ ହେଲେ ସରସ୍ୱତୀ ଜନ୍ମ ଘୋଣିରୁ ମରୁତ ଜାତ ।
ତେଜରୁ ଅନଳ ଶାନ୍ତିରୁ ବରୁଣ ହୋଇଅଛନ୍ତି ସମ୍ଭୂତ ।
ଦୁଃଖୀଲୋକ ଧନ ଦରିଦ୍ର ଜୀବନ ଆରତଭଞ୍ଜନ ବାନା ।
ଜଗତଜନଙ୍କ ନିସ୍ତାରଣ ନାଥ ଅନାଥର ବନ୍ଧୁ ସେହ୍ନା ।
ହର ବ୍ରହ୍ମା ଯାର ଚରଣେ କିଙ୍କର ନ ପାଆନ୍ତି ଅନ୍ତ ଲେଶ ।
ମୁଁ ଛାର ପାମର ହୀନ ମୂଢ଼ମତି ମହିମା କହିବି କିସ ।
ଜୟ ଜୟ ଜୟ ପରମେଶ୍ୱର ଦେବତାମାନଙ୍କ ରାଜ ।
ଭକତଙ୍କ ଭେଳା ଶ୍ୱେତପଦ୍ମ ଡୋଳା ମହାବାହୁ ଚତୁର୍ଭୁଜ ।
ଜୟ ଆର୍ତ୍ତତ୍ରାଣ ଦୁଃଖ ନିବାରଣ ତୁମ୍ଭେ ଅଟ ମୋ ଶରଣ ।
ଆଜ୍ଞା ହୋଇଲେ ମୁଁ ବର୍ଣ୍ଣନ କରିବି ଅଭୟ ପଦ୍ମ ଚରଣ ।
ଏମନ୍ତ ସ୍ତୁତିକି ରଚନା କରିଣ ଦିବ୍ୟ କାଳିରେ ଲେଖିଲେ ।
ପ୍ରଣାମ କୋଟିଏ ନମସ୍କାର କରି ଦ୍ୱାରୀ ହାତେ ଲେଖା ଦେଲେ
ଅନେକ ପ୍ରକାରେ ବିନୟୀ ହୋଇଣ କହିଲେ ଭକତଭାବେ ।
ପ୍ରଭୁଙ୍କ ପାର୍ଶ୍ୱକୁ ସ୍ତବ ଲେଖି ଦେଇ ରହିଲେ ଅଙ୍ଗଣା ଠାବେ ।
ରତ୍ନ ପଲଙ୍କରେ ବିଜେ କରିଛନ୍ତି ସତ୍ୟଭାମା ଚକ୍ରଧାରୀ ।

ଏମନ୍ତ ସମୟେ ପବ ନେଇ ଗଲା ବଜ୍ରପ୍ତ ନାମରେ ଦ୍ୱାସୀ ।
ପ୍ରଭୁଙ୍କୁ ଗ୍ରହଁଣ କରକୁ ଯୋଡ଼ଣ ଭୂମିଷ୍ଠ ପ୍ରଣାମ କର ।
ଆପଣଙ୍କଠାକୁ ଉଦାସୀ ପୁରୁଷ ପବ ବେଇଛନ୍ତ ହର ।
ଶୁଣିଣ ଶ୍ରୀହର କରେ ପବ ଧର ଶୀଘ୍ର ଶୀଘ୍ର ପଢ଼ିଗଲେ ।
ମ୍ରବକୁ ପଢ଼ିଣ ପ୍ରହ୍ଲାଦ ଆସିଛୁ ମନେ ମନେ ଜ୍ଞାତ ହେଲେ ।
ସତ୍ୟଭାମା ମୁଖ ଗ୍ହିଁ ପଦ୍ମମୁଖ ଆଜ୍ଞାଦେଲେ ନାରାୟଣ ।
ସୁବର୍ଣ୍ଣ ଝାରେ ନୀର ଯେଇନ ଗ୍ଲେ ଧୋଇବା ଭକ୍ତ ଚରଣ ।
ଶୁଣି ଠାକୁରାଣୀ ଗଙ୍ଗାଜଳ ଆଣି କନକ ପାତ୍ରରେ ଭର ।
ପ୍ରହ୍ଲାଦ ପାଦକୁ ଧୋଇବା ନିମନ୍ତେ ବଜେଇକଲେ କୃଷ୍ଣ ନାରୀ ।
ଅଗ୍ରେ ମହାପ୍ରଭୁ ପଛେ ସତ୍ୟଭାମା ପ୍ରବେଶିଲେ ସିଂହଦ୍ୱାରେ ।
ଦେଖି ପ୍ରହ୍ଲାଦ ପାଦପଦ୍ମ ଧର ପ୍ରଣାମ କଲେ ଭୂମିରେ ।
ଶ୍ରୀକୃଷ୍ଣ କହିଲେ, ଉଠ ଉଠ ଭକ୍ତ କରୁଥାଅ ଶୋକ କେତେ ।
ଇନ୍ଦ୍ର ସମ୍ପତ୍ତିରୁ ବଳ ବର ଦେବା ଯାହା ଇଚ୍ଛା ମାଗ ମୋତେ ;
ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ କି ବର ମାଗିବି ମୁହିଁ ।
ଭକ୍ତିକୁ ସମ୍ପଦ ପ୍ରଭେ ! ଆଜ୍ଞା ନୋହୁ ବରଦଅ ମୋତେ ଏହି ।
ଇନ୍ଦ୍ର ସମ୍ପତ୍ତିରେ ମୋହିତ ହୋଇଣ ତୁମ୍ଭଙ୍କୁ ଛାଡ଼ିଲି ନାହିଁ ।
ଦୁର୍ଲ୍ଲଭ ଭକ୍ତ୍ୟ ପ୍ରାର୍ଥନା କରୁଛୁ ଶୁଣ ହେ କମଳାସାଇଁ ।
ଯେତେ ଭକ୍ତଚର୍ତ୍ତ ଶ୍ରୀଚରଣେ ସ୍ଥିତ ସମସ୍ତେ ହୋଇବେ ଦୁଃଖୀ
ତୁମ୍ଭ ନାମ ଏକା ସମ୍ଭବ ହୋଇବ ଯୋଗ୍ମି ହେଉଥିବେ ସୁଖୀ ।
ବିଷୟି ଯେତେଜଣ ତୁମ୍ଭଙ୍କୁ ଭଜିଲେ ଜନମ ସଫଳ ହେବ ।
ଯେତେବେଳେ ଭକତେ ନିସ୍ତାର ପାଇବେ ତୁମ୍ଭଙ୍କ ନିନ୍ଦା ନୋହିବ
ପ୍ରହ୍ଲାଦଙ୍କ ବାଣୀ ଶୁଣି ଚକ୍ରପାଣି ସଙ୍କ୍ଷେପେ କହିଲେ ଟିର ।
ଅନ୍ୟ କିଛି ମୋତେ ପ୍ରକାଶ ନ କର ମାଗିଲ କିପାଁ ଏ ବର ?।
ଏମନ୍ତ ବିଗ୍ଭର କଲେ ଚକ୍ରଧର ଭକ୍ତଙ୍କୁ ନୋହିଲା ସୁଖ ।
ମୋତେ ଅଶ୍ରାକର ଏ ମୋର ଭକତେ କେମନ୍ତେ ଲଭିବେ ଦୁଃଖ
ପ୍ରଭୁଙ୍କ ବଚନେ ପ୍ରହ୍ଲାଦ କହିଲେ, ଶୁଣିମା ହେଉ ଗୋସାଇଁ ।
ମନୁଷ୍ୟ ପର୍ବତୟେ ସୁପଥ ଲଭିବା ସୁଖ ଅଛି ଅନ୍ୟେ କାହିଁ ।

ସମସ୍ତ ଭକତ ହୋଇବେ ମୁକତ ଆଜ୍ଞା ହେଉ ହୃଷୀକେଶ ।
ମୋହର ମାଗୁଣି ତୁମ୍ଭଙ୍କୁ ଏତେକ ଅଧିକ କହିବି କିସ ॥
ପ୍ରହ୍ଲାଦଙ୍କ ବାଣୀ ଶୁଣି ଚକ୍ରପାଣି ଆନନ୍ଦେ କହିଲେ କଥା ।
ଉଦ୍ଧବ କହିଲେ, ଶୁଣ ଗୋପନାରୀ ! ଭକତଙ୍କ ମୁକ୍ତିଗାଥା ॥
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ! କହିଲ ଯେଉଁ ବଚନ
ଆମ୍ଭେମାନେ ଶୁଣି ବଚନ ମଣିଲୁଁ ଏମନ୍ତ ପ୍ରଭୁଙ୍କ ଗୁଣ ॥
ପ୍ରହ୍ଲାଦ ବୀରକୁ ଯେତେବେଳେ ଥିଲା ହିରଣ୍ୟଦୈତ୍ୟ ଆକର୍ଷି
କାହିଁପାଇଁ କୃଷ୍ଣ ପ୍ରକାଶ ହୋଇଲେ ସ୍ତମ୍ଭର ମଧ୍ୟରେ ଆସି ॥
ଭକ୍ତକୁ ବିପତ୍ତି ପଡ଼ିବା ମାତ୍ରକେ କାହିଁଥିଲେ ଚକ୍ରବାହା ।
ତେତେବେଳେତାଙ୍କୁକେଯାଇଁକହିଲାକେମନ୍ତେଜାଣିଲେ ତାହା
ସେଥିପାଇଁ ଆମ୍ଭମାନଙ୍କ ମନରେ ବିଶ୍ୱାସ ତ ହେଉ ନାହିଁ ।
ଏହି କଥାମାନ ସନ୍ଦେହ ଲାଗୁଛି ବିଶେଷି କହ ଗୋସାଇଁ ॥
ଉଦ୍ଧବ ବୋଇଲେ, ନାମ ଭାବଗ୍ରାହୀ ଭକ୍ତଙ୍କ ମନରେ ଥିଲେ ।
ଭକ୍ତ ମନ ସ୍ତମ୍ଭେ ପ୍ରବେଶ ହୁଅନ୍ତେ ତହିଁ ଯାଇ ବିଜେ କଲେ ॥
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ଆମ୍ଭେ କି ଉପମା ଦେବା
ଏମନ୍ତ ପ୍ରଭୁଙ୍କ ମୁଖେ ନ ଜାଣନ୍ତି ଅନ୍ୟକୁ କରନ୍ତି ସେବା ॥
ଭକ୍ତଙ୍କର ଦୁଃଖ ଦେଖି ପଦ୍ମମୁଖ ବଡ଼ ଅନୁଗ୍ରହ କରି ।
କଶ୍ୟପ ସେବାରେ ହିରଣ୍ୟ ପୁତ୍ରକୁ ଇନ୍ଦ୍ରପଦ ଦେଲେ ହରି ॥
ଉଦ୍ଧବ ବୋଇଲେ, ତାହାଙ୍କ ମହିମା ନ ଜାଣ କି ତୁମ୍ଭେ ଗୋପୀ
ମନମଧ୍ୟେ ତାଙ୍କୁ ଭାବନା କଲେଟି ଦୁଃଖରୁ ତରନ୍ତି ପାପୀ ॥
ପ୍ରଭୁଙ୍କ ସେବକ ଅଟେ ବଡ ଲୋକ ତା ସମ ନାହିଁ ମହୀରେ ।
ହର ବ୍ରହ୍ମା ଇନ୍ଦ୍ର ପଦକୁ ଲଭନ୍ତି କ୍ଷଣକେ ତାଙ୍କ କୃପାରେ ॥
ଭକ୍ତଙ୍କର ବନ୍ଧୁ କୃପାମୟ ସିନ୍ଧୁ ହୃଦରେ ନ ଥାଏ ମାୟା ।
ଆପଣା ପଦକୁ ଭକ୍ତକୁ ଦିଅନ୍ତି ପ୍ରଭୁଙ୍କ ଏମନ୍ତ ଦୟା ॥
ଗୋପୀଏ ବୋଇଲେ,କେମନ୍ତେ ଜାଣିବା ଆମ୍ଭ ମନ ସ୍ଥିର ନାହିଁ
ଆପଣା ପଦକୁ କେଉଁ ଭକତକୁ ଦେଇଛନ୍ତି ଭାବଗ୍ରାହୀ ॥
ଏ କଥା ଶୁଣିଣ ବଚନ ମଣିଣ ସନ୍ଦେହ ଲାଗିଲା ଚିତ୍ତେ ।

ତୁମ୍ଭଠାରୁ ଯେବେ ସେ କଥା ଶୁଣିବୁଁ ତେବେ ସିନା ସିନ୍ଧୁପ୍ରତେ
ଉଦ୍ଧବ ବୋଇଲେ, ଶୁଣ ଗୋପନାରି । ଏ ମହା ଗୁପତ ପଦ ।
ନିଶ୍ଚଳ କରିଣ ମନରେ ରଖିଲେ ନାଶଇ ମନର ଖେଦ ।
ପାପକୁ ସେ ଘାଟେ ବୈକୁଣ୍ଠକୁ ବାଟେ ବିଷ୍ଣୁର ଦିବ୍ୟ କୀରତି ।
କହୁଅଛି ତାହା ତୁମ୍ଭ ଅଗ୍ରତରେ ଶୁଣ ଲଭିବ ମୁକତି ।
ସଙ୍କର୍ଷଣ ନାମେ ଏକ ଦ୍ୱିଜବର ମର୍ତ୍ତ୍ୟମଣ୍ଡଳରେ ଜାତ ।
ବିଷ୍ଣୁ ସେବା କରି ସେ ପଦ ଲଭିଲେ ଶୁଣ ହେ ତାଙ୍କ ଚରିତ ।
ତାହାଙ୍କ ମହିମା ଯେତେକ ବର୍ଣ୍ଣିବା କହିଲେ ନ ସରେ ଜାଣ ।
ଜନ୍ମିବା ମାତ୍ରକେ ପିତା ମାତା ମଲେ ଏମନ୍ତ ପାପୀ ବ୍ରାହ୍ମଣ ।
ସେ ଜନ୍ମ କାଳରୁ ଭିକ୍ଷା କରି ବଞ୍ଚେ ସମସ୍ତେ କରନ୍ତି ସ୍ନେହ ।
ପ୍ରତିଦିନ ଦ୍ୱିଜ ଭନ୍ନ ମୁଷ୍ଟି ଧରେ ବର୍ଦ୍ଧିତ ହୋଇଲା ଦେହ ।
ଏହିପରି କେତେଦିନ ଗତ ହେଲା କ୍ରମେ ଦ୍ୱିଜ ବଢିଲା ।
ବଡ଼ ଦୁଷ୍ଟ ଅଟେ ତାହାର ସ୍ୱଭାବ କିଛି ବିଦ୍ୟା ନ ପଢ଼ିଲା ।
ସମସ୍ତଙ୍କ ଗୃହେ ଭକ୍ଷଇ ଅନ୍ନକୁ ପାପକୁ ନ ଥାଇ ଭୀତି ।
ମିଛ ମାୟା ଯେତେ ପ୍ରକାର କରଇ କହିବା କେତେକ ଅନୀତି ।
ପଶୁ ପ୍ରାୟେ ହୋଇ ବୁଲେ ଏଣେତେଣେ ସମସ୍ତେ କରେ ଦ୍ୱେଷଣ
ଅଭ୍ୟାଗତ ହୋଇ ନିଜ ପତ୍ନୀ ନାହିଁ ପରସ୍ତ୍ରୀ କରେ ଗମନ ।
ପୁରାଣକୁ ନିନ୍ଦେ ଦେବତା ନ ବନ୍ଦେ ନାସ୍ତିକ ଅଟେ ବ୍ରାହ୍ମଣ ।
ମହାପାପୀ ହୋଇ ଚରମକାଳକୁ ବେଶ୍ୟାଘରେ ଗଲା ପ୍ରାଣ ।
ସେହି ବେଶ୍ୟା ନାମ୍ନୀ ପରମସୁନ୍ଦରୀ ବିଷ୍ଣୁରେ ତାର ଭକତି ।
ପ୍ରଭୁଙ୍କର ପାଦେ ମନ ଲୀନ ହୋଇ ଜପଧ୍ୟାନ କରେ ନିତି ।
ସେ ବେଶ୍ୟା ଏମନ୍ତ ମନେ ବିଚାରିଲା କି ବୁଦ୍ଧି କରିବି ଆଜ ।
ମୋର ଘରେ ବିପ୍ର ପ୍ରାଣ ହରାଇଲା ମୋ ଯୋଗୁଁ ମୁକତି ପାଉ
ମଦନା ବେଶ୍ୟା ସେ ଏମନ୍ତ ଭାଳିଣ ତିଳକ ଧାରଣ କରେ ।
ଶ୍ରୀହରି ମନ୍ଦିର ନାମରେ ତିଳକ କାଟିଲା ବ୍ରାହ୍ମଣ ଶିରେ ।
ସ୍ୱଭାବରେ ଦ୍ୱିଜକୁଳେ ଜନ୍ମହୋଇ ବେଶ୍ୟା ଗୃହେ ଗଲା ନାଶ ।
ମହାପାପୀ ବିପ୍ର ଯମଦୂତେ ଜାଣି କରେ ଧରିଛନ୍ତି ପାଶ ।

କେହି ବୋଲୁଛନ୍ତି ବ୍ରାହ୍ମଣଙ୍କୁ ଧରି କଣ୍ଠରେ ଦିଅ ବାଡ଼ି ।
କେହି କହୁଛନ୍ତି ବୃକ୍ଷମୂଳେ ବାନ୍ଧି ପିଟିବା ଲୁହାର ବାଡ଼ି ।
କେହି ବୋଲୁଛନ୍ତି ବସ୍ତ୍ର କେଶଧରି ଅଗ୍ନିପଥେ ଘୋଷାରିଆ ।
କେହି ଭାଷୁଛନ୍ତି ତପ୍ତ ବୈତରଣୀ ନଦୀରେ ନେଇ ବୁଡ଼ାଅ ।
ଏମନ୍ତ ବୋଲିଣ ଯେ ଯାହା ମତରେ ପ୍ରତିଜ୍ଞା କରନ୍ତି ଦୂତେ ।
ଶ୍ରୀହରି ମନ୍ଦିର ତିଳକ ଦେଖିଣ ଭୟ ହେଲା ତାଙ୍କ ଚିତ୍ତେ ।
ଯେତେବେଳେ ବେଶ୍ୟା ଦ୍ୱିଜବର ଶିରେ ତିଳକ କାଟିଲା ଆଣି
ବିଷ୍ଣୁ ଦୂତମାନେ ବ୍ରାହ୍ମଣଙ୍କୁ ଆସି ବେଢ଼ିଲେକ ସେହିକ୍ଷଣି ।
ଯମର ଦୂତଙ୍କୁ ଦେଖିଣ କହିଲେ ଶ୍ରୀକୃଷ୍ଣଙ୍କ ଦୂତ ଯାଇ ।
ଆମ୍ଭର ସେବକ ନେବାକୁ ଆସିଛ ତୁମ୍ଭେମାନେ କାହିଁପାଇଁ ।
ବୈଷ୍ଣବ ଲକ୍ଷଣ ପ୍ରତ୍ୟକ୍ଷ ଦେଖୁଛ ଆମ୍ଭ ପ୍ରଭୁଙ୍କର ଦାସ ।
ଏହାଙ୍କୁ କେମନ୍ତେ ନେବାପାଇଁ ତୁମ୍ଭେ କରେ ଘେନିଅଛ ପାଶ ।
ଭୟ ତାର ନାହିଁ ସେହି କଳୁରାଜା ନାହିଁ କି ପ୍ରତିଜ୍ଞା ଶୁଣି ।
ଆମ୍ଭ ଭକ୍ତଠାକୁ ତୁମ୍ଭଙ୍କୁ ପେଷିଛି ବନ୍ଧନ ହୋଇବ ପୁଣି ।
ତୁମ୍ଭମାନଙ୍କର ଏମନ୍ତ ସାହସ ନେବାକୁ ହୋଇଛ ସଜ ।
ବେତମାଡ଼ ଖାଇ ସମସ୍ତେ ମରିବ ନ ଗଲେ ଏଠାରୁ ଆଜ ।
ଦୂତଙ୍କର ଗିର ତାଙ୍କଠାରୁ ଶୁଣି ବୋଲନ୍ତି ଯମର ଦାସ ।
ପ୍ରଭୁ ଆଜ୍ଞାପାଇ ନେବାକୁ ଆସିଛୁଁ ଆମ୍ଭ ଅପରାଧ କିସ ।
ବିଷ୍ଣୁ ଦୂତମାନେ ? ତୁମ୍ଭେ କି ନ ଜାଣ ଆମ୍ଭେ ବା କହିବୁଁ କିସ
ଏହି ବ୍ରାହ୍ମଣ ଅଟଇ ମହାପାପୀ ବେଶ୍ୟାଘରେ ଗଲା ନାଶ ।
ବିଷ୍ଣୁ ଦୂତ ବୋଲେ ଯେତେ ପାପ କଲା ସର୍ବ ହୋଇଅଛି କ୍ଷୟ
ଶ୍ରୀହରି ମନ୍ଦିର ଲଲାଟରେ ଦେଖି କପାଇଁ ନ କଲ ଭୟ ? ।
ଯମଦୂତ ବୋଲେ ଶୁଣିମା ଗୋସାଇଁ ଆମ୍ଭେ ତାଙ୍କୁ ଭୟକର ।
ସେ ଚିତା ନ ଥିଲେ କମ୍ପା ପଡ଼ୁଥାନ୍ତା ନଅନ୍ତୁଣି ବାଳ ଧରି ।
ବହିଁଲୁ ପାଶରେ ବନ୍ଧନ କରିଣ ଯାଅନ୍ତୁଣି ଶୀଘ୍ର ହୋଇ ।
ଅନେକପ୍ରକାରେ ଦଣ୍ଡ ଦେଇଥାନ୍ତୁ ରାଜାଙ୍କ ସ୍ମୁରେ ନେଇ ।
ଏମନ୍ତ ବଚନ ବିଷ୍ଣୁ ଦୂତେ ଶୁଣି କହିଲେ ସମସ୍ତେ ଯାଅ ।

ଆମ୍ଭର ଭକ୍ତକୁ ଆମ୍ଭେ ନେଉଅଛୁଁ ତୁମ୍ଭ ରାଜା ଆଗେ କହ ।
ହରଷ ହୋଇଣ ଯମ କିଙ୍କରଙ୍କୁ ବିଷ୍ଣୁ ଦୂତେ ଆଜ୍ଞା ଦେଲେ ।
ପୁଷ୍ପକ ରଥରେ ବିପ୍ରକୁ ବସାଇ ବୈକୁଣ୍ଠପୁରକୁ ନେଲେ ।
ପ୍ରଭୁଙ୍କ ସେବକ ଘେନ ବିଷ୍ଣୁ ଦୂତ ମିଳିଲେ ବୈକୁଣ୍ଠପୁରେ ।
ହରି ଶବଦରେ ସେ ପୁର କମ୍ପୁଛି ଶୁଣିଲା ବିପ୍ର କର୍ଣ୍ଣରେ ।
ନିରାଶ ହୋଇଣ ଯମଦୂତେ ଯାଇଁ ଜଣାନ୍ତି ରାଜାଙ୍କ ପାଶ ।
ବୋଲନ୍ତି ହେ ପ୍ରଭୋ ! ଅଦ୍ୟ ରଜନୀରେ ପାପୀ ବିପ୍ର ଗଲା ନାଶ
ବାରତା ପାଇଣ ଅମ୍ଭେମାନେ ଯାଇ ବେଢ଼ିଣ ବସିଲୁଁ ଯେବେ
ବିଷ୍ଣୁ ଦୂତେ ଆସି ବଳେ ଘେନଗଲେ କି ଆଜ୍ଞା ହେଉଛି ଏବେ ।
ଆପଣା ଦୂତଙ୍କୁ କହିଲେ ରାଜନ ଯେଉଁ ବିପ୍ର ଆଜ ମଲା ।
ଶିରଠାରୁ ତାର ଚରଣ ପର୍ଯ୍ୟନ୍ତ ଶରୀରେ କି ଚିହ୍ନ ଥିଲା ? ।
ଦୂତେ କହୁଛନ୍ତି, ଶୁଣ ହେ ରାଜନ ! ଆଉ ନ ଦେଖିଲୁଁ କିଛି ।
ଶ୍ରୀହରି ମନ୍ଦିର ନାମେ ଏକ ଚିତା ଲଲାଟେ ଉପରେ ଅଛି ।
ଯମ କହିଲେ, ଯେ ସେ ଚିତା ନ ଥିଲେ ଅବଶ୍ୟ ଯୁଦ୍ଧ କରନ୍ତି ।
ଶ୍ରୀକୃଷ୍ଣଙ୍କ ଭକ୍ତ ଅଟନ୍ତି ସେମାନେ ନୋହିଲେ କି ନ ଆଣନ୍ତି ।
ଶ୍ରୀହରିମନ୍ଦିର ତୁଳସୀର ମାଳ ଯାହା ଶରୀରେ ପ୍ରମାଣ ।
ତାଙ୍କଠାରେ ତୁମ୍ଭ ଅଧିକାର ନାହିଁ ଆମ୍ଭଠାରୁ ତାହା ଶୁଣ ।
ଆପଣା ଦୂତଙ୍କୁ ପ୍ରବୋଧିଣ ଯମ ଅନ୍ତଃପୁରେ ବିଜେକଲେ ।
ବିପ୍ରଙ୍କୁ ଘେନିଣ ବିଷ୍ଣୁ ଦୂତେ ଏଣେ ପ୍ରଭୁଙ୍କ ଆଗେ ମିଳିଲେ ।
ସମ୍ମୁଖରେ ଯାଇଁ ପ୍ରଣାମ କରିଣ ବୋଲନ୍ତି ଶୁଣ ଅଚ୍ୟୁତ ।
ଆମ୍ଭର ଭକ୍ତକୁ ନର୍କେ ନେବାପାଇଁ ଯମ ପେଷିଥିଲା ଦୂତ ।
ବଡ଼ ଦୁଷ୍ଟମତ ଅଟେ ଜନ୍ମପତ ଏଡ଼େ ଭରସା ତାହାର ।
ପାପ ପୁଣ୍ୟ କିଛି ବିଚ୍ଛୁର ନ କରି ଭକ୍ତକୁ ନେଇଣ ଧରି ।
ଚରଣରେ ବେଢ଼ି ପିଠି ଲୁହା ବାଡ଼ି କେତେ ଯେ ଦୁଃଖ ଦିଅନ୍ତି ।
ଆମ୍ଭେ ଯାଇ ବଳେ ଛଡ଼ାଇ ଆଣିଲୁଁ ନୋହିଲେ ନର୍କେ ନିଅନ୍ତି ।
ଦୂତଙ୍କର ବାଣୀ ଶୁଣି ଚକ୍ରପାଣି ଆଜ୍ଞା ଦେଲେ ଦାମୋଦର ।
କାହିଁ ଅଛି ବିପ୍ର ତାକୁ ଘେନ ଆସ ଦେଖିବାକୁ ଶ୍ରଦ୍ଧା ମୋର ।

ପ୍ରଭୁଙ୍କର ବାଣୀ ଦୂତମାନେ ଶୁଣି ବ୍ରାହ୍ମଣଠାରେ ମିଳିଲେ ।
କହିଲେ, ତୋହର ପାପ ନାଶଗଲା ଲକ୍ଷ୍ମୀପତି ଦୟା କଲେ ।
ପୂର୍ବ ସବୁ କଷ୍ଟ ହେଲା ତୋର ନଷ୍ଟ ଫିଟିଲା କଷଣଭୋଗ ।
ଏବେ ତୋତେ କୃଷ୍ଣେ ଆଜ୍ଞା ହେଉଅଛି ଦର୍ଶନ କରିବୁ ବେଗ
ଆସ ଆସ ବୋଲି ବିପ୍ର କର ଧରି ଛାମୁରେ କଲେ ସେ ନେଇ
ଦେଖିଣ ଗୋବିନ୍ଦ ମନରେ ସାନନ୍ଦ ହସିଲେ ବିପ୍ରଙ୍କୁ ଚାହିଁ ।
ଶ୍ରୀକୃଷ୍ଣ କହିଲେ, ଲଲାଟେ ଲେଖନ ଅନ୍ୟଥା ସେହୁ ନୋହିଲା ।
ପୂର୍ବଜନ୍ମେ ତୁମ୍ଭେ ଆମ୍ଭର ଭକତ ଏମନ୍ତ ଶାପୁଁ ହୋଇଲା ।
ମର୍ତ୍ତ୍ୟରେ ଥାଇଣ କଷ୍ଟ ଭୋଗ କରି ମରଣ ହୋଇଲା ଯେଣୁ ।
ଲେଉଟି ପୂର୍ବର ବାସନା ଘେନିଣ ସ୍ୱର୍ଗକୁ ଆସିଲ ତେଣୁ ।
ଏମନ୍ତ ଭାଷିଣ ଯଶୋଦାନନ୍ଦନ ବିପ୍ର କର ଧରି ନେଲେ ।
ଆହ୍ଲାଦ କରିଣ ଜାନୁରେ ବସାଇ ଭକ୍ତମୁଖେ ଚୁମ୍ବ ଦେଲେ ।
ପ୍ରଭୁ ବୋଇଲେ ହେ, ଶୁଣ ବିପ୍ରମଣି ! ଆଶ୍ରାଜର ଆମ୍ଭ ସେବା ।
ସେବାରୁ ମୁକତିଲଭ ହେବ ଭଲେ ଫଳଶ୍ରୁତି କହାଇବା ।
ପ୍ରଭୁଙ୍କ ବଚନେ ଦ୍ୱିଜବର ବୋଲେ ଶୁଣ ତୁମ୍ଭେ ମହାବାହୁ ।
ମୁଁ ଛାର ପାମର କି ସେବା କରିବି ଶ୍ରୀମୁଖରୁ ଆଜ୍ଞା ହେଉ ।
ଶ୍ରୀକୃଷ୍ଣ କହିଲେ, ଶୁଣ ବିପ୍ରମଣି ! ବିଶେଷି କହିବି ମୁହିଁ ।
ଭୋଜନର ଶେଷେ ମୁଖବାସ ଦେବୁ ପୂର୍ବେ ଯେବଅଛୁ ତୁହି ।
ଆମ୍ଭର ଭକତ ଆମ୍ଭ ପ୍ରାଣ ହିତ ନୂତନ ସେବକ ନୋହୁ ।
ଗତଜନ୍ମେ ଆମ୍ଭ ପାଶେ ଖଟିଥିଲୁ, ଗଙ୍ଗାଧର ନାମ ବହୁ ।
ପ୍ରଭୁଙ୍କର ବାଣୀ ବିପ୍ରମଣି ଶୁଣି ମନରେ ଆନନ୍ଦ ହୋଇ ।
ସ୍ୱସ୍ତିରଇଲି ବୋଲି ଠାକୁରଙ୍କ ପାଦେ ସେବା କଲା ଶୀଘ୍ର ଯାଇ ।
ବିପ୍ର ଗଙ୍ଗାଧର ସେବା କରିବାର ଦେଖିଣ କରୁଣାସିନ୍ଧୁ ।
ଦେବନହସ୍ତେ ଧରି ଭେଟଶାଳାଠାକୁ ବିଜେ କଲେ ଦୀନବନ୍ଧୁ ।
ମୁକୁଟରେ ମଣି ଶିରେ ଶୋଭିବନ ମଧୁକର ନିନ୍ଦେ କେଶ ।
ସୁନ୍ଦର ମୂରତି କୋଟିକାମ ଜ୍ୟୋତି ଭୁବନମୋହନ ବେଶ ।
ହୃଦୟରେ ଲମ୍ବଇ ଅରବିନ୍ଦ ମାଳ ଲଲାଟେ କସ୍ତୁରୀ ରେଖା ।

ଶଙ୍ଖ ଚକ୍ର ଆଦ ଏମାନଙ୍କୁ ଧର ବ୍ରାହ୍ମଣଙ୍କୁ ଦେଲେ ଦେଖା ।
ତାମ୍ବୁଳ ବଡ଼ଆ ଧରଅଛୁ ବପ୍ର ସାନନ୍ଦରେ ଭୋଳ ହୋଇ ।
ମୁଖବାସ ବୋଲ ଭୁଞ୍ଜ ହସ୍ତ ଦେଲା ପ୍ରଭୁଙ୍କ ମୁଖରେ ନେଇ ।
ବପ୍ର ଭକ୍ତଭୋଳ ଦେଖି ଆଦମୂଳ ଆଜ୍ଞାଦେଲେ ଭଗବାନ ।
ହେ ବପ୍ର ! ତୋତେ ମୁଁ ପ୍ରସନ୍ନ ହୋଇଲ ବରମାଗି ଏବେଘେନ
ବ୍ରାହ୍ମଣ କହୁଛି, ଶୁଣିମା ହେଉନ୍ତୁ ଅନ୍ତର୍ଯ୍ୟାମୀ ମହାବାହୁ ।
ଯାହା ମୁଁ ମାଗିବ ତାହା ଆଜ୍ଞାହେବ ନାହିଁ ନକରବ ଆଜ ।
ଏମନ୍ତ ବର ଯେ ଆଜ୍ଞା ଦେବ ମୋତେ ତୁମ୍ଭର ପ୍ରାପ୍ତେ ବଶିବ ।
ହର ବ୍ରହ୍ମା ଇନ୍ଦ୍ର ସ୍ଥାନରେ ମୁଁ ଭ୍ରମି ଅମରପୁରେ ବସିବ ।
ଶ୍ରୀକୃଷ୍ଣ ବୋଇଲେ, ଶୁଣବପ୍ରମଣି ! ତୁମ୍ଭେ ଯେତେ କଲ ସେବ,
ତୁମ୍ଭ ସେବା ଦେଖି ପ୍ରସନ୍ନ ହୋଇଲୁଁ ଶଙ୍ଖ ଆଦ ଚକ୍ରଦେବା ।
ଅଢ ଆଜ୍ଞାବରେ କହୁଛନ୍ତି କୃଷ୍ଣ ଯେଣୁ ତୁମ୍ଭେ ଭକ୍ତ ମୋର ।
ନିଜ ପଦ ତୋତେ ଯାଚକର ଦେବୁଁ ଏତେବଡ଼ଭାଗ୍ୟ ତୋର ।
ବପ୍ର ବୋଲୁଅଛୁ ସେହିରୂପ ଧର ତନ ଭୁବନେ ବୁଲବ ।
କେହି ଯେବେମୋତେଚନ୍ହିନପାରବେତେବେଯେପ୍ରତ୍ୟୟିଯିବ
ଶ୍ରୀକୃଷ୍ଣ କହଲେ, ଅଶେଷବ୍ରହ୍ମାଣ୍ଡେ ବୁଲୁଥିବୁ ବପ୍ର ଯାଇଁ ।
ଆମ୍ଭ ସମାନରେ ପୂଜା ତୁ ପାଇବୁ ଚନ୍ତା କରୁ କାହିଁପାଇଁ ।
ଏମନ୍ତ ଭ୍ରମଣେ କମଳାରମଣ ଅନୁଗ୍ରହ ତାଙ୍କୁ କଲେ ।
ଶଙ୍ଖ, ଚକ୍ର, ଗଦା, ପଦ୍ମକୁ ସମର୍ପି ଚତୁର୍ଭୁଜ କରଦେଲେ ।
ଗରୁଡ଼ଙ୍କୁ ଚାହିଁ ବୋଲନ୍ତି ଶ୍ରୀକୃଷ୍ଣ ଶୁଣ ତୁ ବନତାଶିଷ୍ୟ ।
ଆମ୍ଭର ଭକ୍ତକୁ ପୃଷ୍ଠରେ ବସାଇ ଭ୍ରମି ଆସ ବଶଦଶ ।
ଏହି ବପ୍ରବର ତିଲୋକ ମଧ୍ୟରେ ଯହିଁକି କରିବ ମନ ।
ନାହିଁ ନକର ତୁ ବେଗେ ଚଳଯିବୁ ଶୁଣ ହେ ଖଗରାଜନ ।
ପ୍ରଭୁଙ୍କ ବଚନେ ଖଗେଶ୍ୱର ବୋଲେ ଏତେ ଅନୁଗ୍ରହ ଯାକୁ :
ଆଜ୍ଞା ହେଲେ ମୁହିଁ ଶତଯୁଗଯାଏ ଘେନ ବୁଲୁଥିବ ତାଙ୍କୁ ।
ଶ୍ରୀକୃଷ୍ଣ କହଲେ, ଅଧିକ ନକର ଚଉଦ ଭୁବନେ ପଶି ।
ମୁହୂର୍ତ୍ତମାତ୍ରକେ ଭ୍ରମିଣ ଆମ୍ଭଙ୍କୁ ଦର୍ଶନ କରିବ ଆସି ।

ଶୁଣିଣ ବ୍ରାହ୍ମଣ ହରଷ ହୋଇଣ ଶ୍ରୀକୃଷ୍ଣଙ୍କ ମୁଖ ଗ୍ଭହିଁ ।
ନମସ୍କରିଲ ବୋଲି ଗରୁଡ଼ ପୃଷ୍ଠରେ ସତ୍ୱରେ ବସିଲେ ଯାଇଁ ।
ତଦନ୍ତରେ ଦ୍ୱିଜ ହୋଇ ଦିବ୍ୟ ଘଳ ଗମିଲେ ଗରୁଡ଼ ପୃଷ୍ଠେ ।
ଏକ ନମିଷକେ ଖଗେଶ୍ୱର ଯାଇ ବ୍ରହ୍ମାଙ୍କ ପୁରରେ ଭେଟେ ।
ଦେଖି କରି ଧାତା ଜଗତର ପିତା ମନେ ମନେ ଭୟ କଲେ ।
ବୋଇଲେ ମୋପଦ ଘେନବା ନମନ୍ତେ ବିଷ୍ଣୁ ଅସି ବଳେ କଲେ
ବେଦ୍ଭବରେ ମୁହିଁ ବଞ୍ଚଯୁଟରେ ଥାଇ ଗ୍ଭମୁଲୁ ଆଉ ନ ଗଲି ।
ଅଜ୍ଞାନରେ ମୁହିଁ ଶ୍ରୀକୃଷ୍ଣଙ୍କଠାରେ ମନ୍ଦକର୍ମ ଆଚରିଲି ।
ଏମନ୍ତ ବିଗ୍ଭରି ଜପ ଧ୍ୟାନ କରି ଧାତା ସ୍ତୁତିପାଠ ପଢ଼ି ।
କୋଟି ବର୍ଣ୍ଣ ବ୍ରତ ହେଲେ ସେତାହାଙ୍କୁ ଶିରେ ବେଦନକରପେଢ଼ି
ସେହିଠାରୁ ପୁଣି ଗଲେ ଖଗମଣି ମିଳିଲେ ଈଶ୍ୱର ସ୍ଥାନ ।
କୈଳାସ କନ୍ଦରେ ଥାଇଁଣ ଗ୍ଭହିଁଲେ ପଞ୍ଚମୁଖ ତ୍ରିଲୋଚନ ।
ଦେଖିଣ ବୋଇଲେ ଗରୁଡ଼ ପୃଷ୍ଠରେ ବିଜେ କଲେ ବାସୁଦେବ ।
ନଷ୍ଟପ୍ରୟ ଏଠାରେ କଛୁ କାର୍ଯ୍ୟ ନାହିଁ ମୋ ଈଶ୍ୱର ପଦ ନେବ ।
ଆସନରୁ ଉଠି ପ୍ରଣାମ କରିଣ ଦୂରରୁ ଯୋଡ଼ିଲେ ହସ୍ତ ।
ବୋଇଲେ, ସକଳ ଦୋଷ କ୍ଷମା କର ଆରତଭଞ୍ଜନ ନାଥ ।
ବେଦ୍ଭରେ ମୋହର ସମୟ ନୋହିଲା ଦର୍ଶନ ନକଲି ଯାଇ ।
ତୁମ୍ଭ ସେବାରେ ମୁଁ ମନ ଦେଇଅଛି କୋପ ନକର ଗୋସାଇଁ ।
ଏମନ୍ତ ଦେଖିଣ ଗରୁଡ଼, ବ୍ରାହ୍ମଣ, ଆସିଲେ ତହୁଁ ତ୍ୱରିତେ ।
ବ୍ରାହ୍ମଣ ବୋଇଲେ, ଠାକୁରଙ୍କ ବର ଅନ୍ୟଥା ନୋହିଲାମୋତେ
ପ୍ରସନ୍ନ ହୋଇଣ ଆପଣାର ପଦ ଯାଚି ଦେଲେ ବିଜ୍ଞସେହ୍ନା ।
କାହିଁ ବସି ପୂର୍ବେ ତପ କରିଥିଲି ଧନ୍ୟ ମୋ ପୂର୍ବବାସନା ।
ଗ୍ଭଲ ହେ ଗରୁଡ଼ ! ବିଳମ୍ବ ନକର ବୈକୁଣ୍ଠପୁରକୁ ଯିବା ।
ପ୍ରଭୁଙ୍କର ବର ପ୍ରତ୍ୟକ୍ଷେ ଜାଣିଲି ଆଉ କିମ୍ପା ଏଥି ଥିବା ।
ବିପ୍ରଙ୍କର ବାଣୀ ଶୁଣି ଖଗମଣି ସଧୀରେ ଗମନ କଲା ।
ବ୍ରାହ୍ମଣଙ୍କୁ ଘେନ ଯାଇଁଣ ଗରୁଡ଼ ବିଷ୍ଣୁ ଭୁବନେ ମିଳିଲା ।
ସିଂହଦ୍ୱାରେ ଯାଇଁ ରହିଲା ଗରୁଡ଼ ବିପ୍ରଙ୍କୁ ଓହ୍ଲାଇ ଦେଲେ ।

ଶଙ୍ଖ ଚକ୍ର ଗଦାକ ବିରାଜ ବିଶୁଦ୍ଧ ସମସ୍ତେ ଦେଖିଲେ ତୋଳେ ।
ଗଦା ପଦ୍ମ ବେଦ ଧେନ ଚତୁର୍ଭୁଜେ ବ୍ରାହ୍ମଣ ହୋଇଛନ୍ତି ଭଲ ।
ନିଜେ ନାରାୟଣ ବିଜୟ କଲେ କି ବୈକୁଣ୍ଠ ପାଉଛି ଶୋଭା ।
ଆପଣେ ଶ୍ରୀହରି ବିପ୍ରେ ଦୟା କରି ଆଜ୍ଞା ଦେଇଛନ୍ତି ଯାହା ।
ଲୋକମାନେ ଆସି ପ୍ରଭୁପ୍ରାପ୍ତ ମଣି କେହି ନ ଜାଣନ୍ତି ତାହା ।
ଲକ୍ଷ୍ମୀ ଆଗେ ଯାଇଁ ଦାସୀଏ କହନ୍ତି ଅର୍ଘ୍ୟ ଧେନ ଆସ ମାଏ ।
ତୁମ୍ଭ କାନ୍ତ ଆସି ଦ୍ୱାରେ ରହିଛନ୍ତି ସତ୍ୱରେ କର ବିଜୟେ ।
ଦାସୀଙ୍କର ବାଣୀ ଶୁଣି ଠାକୁରାଣୀ ଚଞ୍ଚଳେ ଆସିଲେ ଧାଇଁ ।
ପ୍ରଭୁ ବୋଲି ଆସି ନମସ୍କାର କଲେ ବ୍ରାହ୍ମଣ ମୁଖକୁ ଚାହିଁ ।
ପ୍ରଣାମ କରନ୍ତେ ସିନ୍ଧୁର କୁମାରୀ ବହୁତ ଆନନ୍ଦ ହେଲେ ।
ସମ୍ମୁଖରେ ଆସିଣ କରପଦ ଯୋଡ଼ି ବନିତାନନ୍ଦନ ବୋଲେ ।
ମୋ ବଚନ ତୁମ୍ଭେ ଶୁଣ ଠାକୁରାଣୀ ଏତ ନୁହନ୍ତି ଶ୍ରୀହରି ।
ଭକ୍ତ ସେବା ଦେଖି ଆପଣା ମୂର୍ତ୍ତିକି ଦେଇଅଛନ୍ତି ମୁରାରି ।
ନିଜ ପଦ ଦେଇ ଗ୍ରାମ ବୁଲି ଯାଇ ଅଛନ୍ତି ଦେବାଧିରାଜ ।
ଜାଣି ନ କହିଲେ ଅପରାଧ ହେବ ତେଣୁ ମୋତେ ବଡ ଲାଜ ।
କମଳା କହିଲେ, ତାହା ମୁଖ ଚାହିଁ ଶୁଣ ହେ ବିନତା ବତ୍ସ ।
ଶଙ୍ଖ, ଚକ୍ର, ଗଦା ବିରାଜ ଦିଶୁଛି କେମନ୍ତେ କହିବା ମିଛ ।
ଏହି ଯେବେ ସତ୍ୟ ନୁହନ୍ତି ମୋ କାନ୍ତ କେମନ୍ତେ ବିଶ୍ୱାସ ଯିବା ।
ଗ୍ରାମ ବୁଲି ଯେବେ ଯାଇଛନ୍ତି ପ୍ରଭୁ ଆସିବା ପର୍ଯ୍ୟନ୍ତ ଥିବା ।
ଲକ୍ଷ୍ମୀଦେବୀଙ୍କର ଅନ୍ତର୍ଗତ କଥା ଜାଣିଲେ ସାରଙ୍ଗପାଣି ।
ବୋଇଲେ, ଆମ୍ଭଙ୍କୁ ନ ଦେଖି ବିଷାଦ କରନ୍ତି ସିନ୍ଧୁ ଦୁଲଣୀ ।
ଏମନ୍ତ ବିଚାରି ନିଜେ ମହାପ୍ରଭୁ ମିଳିଲେ ଲକ୍ଷ୍ମୀଙ୍କ ଆଗେ ।
ଦେଖିଣ କମଳା ମହାଲଜ୍ଜା ପାଇ ଭିତରକୁ ଗଲେ ବେଗେ ।
ପ୍ରଭୁଙ୍କୁ ଚାହିଁଣ ବୋଲଇ ବ୍ରାହ୍ମଣ ତୁମ୍ଭେ ଶୁଣ ବ୍ରହ୍ମରାଶି ।
ଧ୍ୟାନ ବିପ୍ର ଆଜ୍ଞା ପ୍ରମାଣେ ବହିଲି ଆପଣଙ୍କ ତେଜରାଶି ।
ଏଣିକି ଶ୍ରୀହରି ମୋତେ ଦୟା କରି ଦୁର୍ବଳ ହୋଇଲି ମୁହିଁ ।
ଶିର ସମଗ୍ରରୁ ମୋତେ ଲାଗୁଅଛି କି ବୁଦ୍ଧି କରିବି କହ ।

ଏବେ ତୁମ୍ଭ ତେଜ ନାଅ ଦେବଗ୍ରାନ ସମ୍ଭ୍ରାନ କରୁଣା । ସାଇଁ ।
ଶଙ୍ଖ, ଚକ୍ର, ଚନ୍ଦ୍ର ଗଦା ପଦ୍ମ ଭାର ମୁଁ ସ୍ଥିର ବହିବ କାହିଁ ।
ବାଲ୍ୟକାଳେ କାହିଁ ସିନ୍ଧୁ ବାନ୍ଧ ହୁଏ ଶୁଣ ହେ ଶାରଙ୍ଗଧର ।
ମୋର ସେବା ଏବେ ମୋତେ ଅଜ୍ଞା ହେଉ ଏତକ ମାଗୁଛି ବର
ଶ୍ରୀକୃଷ୍ଣ ବୋଇଲେ, ଆମ୍ଭେ ବରଦେଲୁଁ ଅନ୍ୟଥା ନହେଲା ଦ୍ୱିଜ
ଯେ ଯାହା ର ଦ୍ରବ୍ୟ ସେତାହାବହିବତୋତେକାହୁଁ ହେବେସଜ
ଏବେ ତୋର ସେବା କାହିଁକି ନଦେବାଭାବରୁ ଯେଜନ୍ମେ ଭବ
ମନ ସ୍ଥିର କରି ମୋତେ ହୃଦେ ଧରି ଦୁର୍ଲ୍ଲଭ ପଦକୁ ଲଭ ।
ଏମନ୍ତ କହିଣ ଯଶୋଦାନନ୍ଦନ ଜ୍ଞାନପଥ ବୁଝାଇଲେ ।
ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧେନକରି ଅନ୍ତପୁରେ ବିଜେକଲେ ।
ଶ୍ରୀବତ୍ସର ଚିହ୍ନ ହୃଦରେ ଶୋଭଇ କଣ୍ଠରେ କୌସ୍ତୁଭମଣି ।
ମହାମୂଲ୍ୟ ଗଜଦନ୍ତ ପଲଙ୍କରେ ବିଜେକଲେ ଚକ୍ରପାଣି ।
ଶ୍ରୀକୃଷ୍ଣଙ୍କୁ ଦେଖି ଶରଚ୍ଚନ୍ଦ୍ରମୁଖୀ ଲଜ୍ଜାରେ ଶିର ପୋତିଲେ ।
ଠାକୁରଙ୍କଠାରେ କ୍ରୋଧଭର ହୋଇ କିଛି କଥା ନ କହିଲେ ।
ବସ୍ତ୍ର ହସ୍ତ ନେଇ ଲଲାଟେ ଲଗାଇ ମହାକୋପଭର ହେଲେ ।
ହେଠମାଥ ହୋଇ ବିରସ ବଦନେ ବସିଲେ ସେ ଭୂମିତଳେ ।
କମଳାର ଶୁଷ୍କ ଦେଖି ପଦ୍ମମୁଖ ଆଜ୍ଞା ଦେଲେ ଚକ୍ରବାହା ।
ତୁମ୍ଭଠାରେ ଆମ୍ଭେ କେଉଁ ଦୋଷ କଲୁଁ ଅକପଟେ କହ ତାହା ।
ଦୁର୍ବୁଦ୍ଧି ଧରିଣ ମନେ ତାପ କଲ କାହିଁପାଇଁ ଏତେ ରୋଷ ।
କି ଅବା ତୁମ୍ଭଙ୍କ କି ସେବା ନ କଲି ଅପୂର୍ବ ହୋଇଲା କସ ।
କମଳା ଭଣିଲେ ଶୁଣ ଚକ୍ରପାଣି ଅଧିକ କହିବା କାହୁଁ ।
ତୁମ୍ଭ ମାୟା ମୋତେ ଗୋଚର ନୋହିଲା କି ବୁଦ୍ଧି କହିବ ଆଉ
ସାମନ୍ତ ହୋଇଣ ଭକ୍ତଭାବେ ବାଇ କହିତ କଥାରେ ଭୋଳ ।
ମର୍ତ୍ତ୍ୟପୁର ପାପୀ ବ୍ରାହ୍ମଣ ଗୋଟାକୁ ଶଙ୍ଖ, ଚକ୍ର, ଚିହ୍ନ ଦେଲ ।
ସେଥିପାଇଁ ହରି ମନେ ତାପ କରି ଲଜ୍ଜାରେ ପୋତିଲି ଶିର ।
ଯାକୁ ଇଚ୍ଛା ହୋଏ ତାକୁ ଦୟା କର କେମନ୍ତ କଥା ତୁମ୍ଭର ।
ଦାସୀଙ୍କର ବାଣୀ ଅନ୍ତଃପୁରୁ ଶୁଣି ଗୃହରୁଁ ବାହାର ହୋଇ ।

ତୁମ୍ଭପ୍ରାପ୍ତ ମଣି ନମସ୍କାର କଲି ବ୍ରାହ୍ମଣ ମୁଖକୁ ଚାହିଁ ।
ଶ୍ରୀକୃଷ୍ଣ ବୋଲନ୍ତି, ଶୁଣ ପ୍ରାଣେଶ୍ୱରି ! ସେ ବିପ୍ର ଆମ୍ଭର ବେହ ।
ଭକତଙ୍କୁ ତୁମ୍ଭେ ନମସ୍କାର ହେଲେ ଲଜ୍ଜା ଛପି । ହେଲା କହ ।
ଭକ୍ତଠାରୁ ମୁହିଁ ଭିନ୍ନ ନୋହେ ସତ୍ୟ ! ଏଥିରେ ଭ୍ରାନ୍ତି ନ କର
ଲେଖାରେ ଆମ୍ଭର ନିଜ ଭ୍ରାତୃପୁତ୍ର ଅଟେ ସେହି ଦ୍ୱିଜବର ।
ଲକ୍ଷ୍ମୀ ବୋଇଲେ, ଏ କେମନ୍ତେ ଚରିତ୍ର ଆମ୍ଭେ ତାହା ନଜାଣୁ
ତୁମ୍ଭର କେମନ୍ତେ ସେହି ଭ୍ରାତୃପୁତ୍ର ତୁମ୍ଭଠାରୁ ଆମ୍ଭେ ଶୁଣୁ ।
ପ୍ରଭୁ ବୋଇଲେ, ଗୋଶୁଣ ଖଞ୍ଜନାକ୍ଷୀ ! ଆମ୍ଭ ଭ୍ରାତା ଦେବରାଜା
ସାବିତ୍ରୀ ଯେ ଆଉ ଗାୟତ୍ରୀ ନାମରେ ବ୍ରହ୍ମାଙ୍କର ବେନି ଭାର୍ଯ୍ୟା ।
ପ୍ରତିଦିନ ରବେ ଗଙ୍ଗାରେ ପଶିଣ ସ୍ନାନ କରନ୍ତି ସେ ଯାଇଁ ।
ସାବିତ୍ରୀ ବୋଲିଣ ସେଉଁ ଯୁବତୀଟି ଗର୍ଭବତୀ ହୋଇଥାଇ ।
ଦୈବଯୋଗରେ ମାସ ଦିବସ ହୋଇଛି ପ୍ରସବ ସମୟ ଯେଣୁ ।
ଗଙ୍ଗା ଜଳେ ଥାଇ ଗର୍ଭବ୍ୟଥା କଲା ଆସି ନ ପାରିଲେ ତେଣୁ ।
ସ୍ୱଭାବରେ ନାରୀ ପରମ ସୁନ୍ଦରୀ ଗରୁ ହେଲା କଠୀଭାର ।
ମହାକଷ୍ଟ ପାଇ ସେହିଠାରେ ଦେବୀ ପ୍ରସବ କଲେ କୁମର ।
ସେ ଯାହା ଅର୍ଜଇ ସେ ତାହା ଭୁଞ୍ଜଇ ପୂର୍ବ ଜନ୍ମାର୍ଜ୍ଜିତ କଥା ।
ଗର୍ଭରୁ ପଡ଼ିଣ ଶିଶୁକୁମାରଟି ମନେ ମନେ କଲେ ଚିନ୍ତା ।
କୁମାର ବୋଲୁଛି ବ୍ରହ୍ମାଣ୍ଡ ଯାକତ ଘୋଟିଅଛି ବିଷ୍ଣୁ ମାୟା ।
କାହିଁପାଇଁ ଏଥେ ଜନମ ହୋଇଲି କେ ମୋତେ କରିବ ଦୟା ।
ଲଲରକ୍ତେ ଶିଶୁ ମିଶ୍ରିତ ହୋଇଣ ଆକୁଳେରେ କାନ୍ଦୁଅଛି ।
ଗୋବିନ୍ଦ ଗୋବିନ୍ଦ ସୁମରି କୁମର ଭୂମିରେ ପଡ଼ି ଗଡ଼ୁଛି ।
ଦେଖି ପୁତ୍ର ମୁଖ ବିଭୂରି ଗଲା ଦୁଃଖ କୋଳେ ଧରିବାକୁ ବାଳୀ ।
ଉଠ ଉଠ ବୋଲି ତାହାକୁ ଟେକନ୍ତେ ଭୂମିରୁ ନ ପାରେ ତୋଳି
ନାନା ପ୍ରକାରରେ ବସ୍ତୁ ପଠନରେ ଅନେକ ଉପାୟ କଲା ।
ମହାଭାରି ହୋଇ ବାଳକ କୁମର ଦେଖୁ ଦେଖୁ ବଢ଼ି ଗଲା ।
କର ଚରଣକୁ ଧରିଲେ ନ ଚଳେ ଦ୍ୱିଗୁଣ ହୋଇଲା ରୂପ ।
ତୋଳି ତୋଳି ଦେବୀ ବିମୁଖ ହୋଇଣ ମନରେ ଅତିହିଁ କୋପ ।

ମାତା ବୋଲଇତୁପୁତ୍ରହୋଇଯେବେଅଯୂତ ନୋହିଲୁ ମୋତେ
ଯାହା ନାମ ଧରି ଏମନ୍ତ ହେଉଛୁ ସେହି ପ୍ରତିପାଳୁ ତୋତେ ।
ନିଶି ଦିବସରେ ଗୋବିନ୍ଦ ସୁମରେ ତାଙ୍କେ କୃଷ୍ଣ ରକ୍ଷା କର ।
ବାଳକ ମୁନିର ଦୃଢ଼ ସେବା ଦେଖି ପ୍ରସନ୍ନ ହେଲେ ସତ୍ୱର ।
ଦେଖିଣ ବାଳୁତ ଶିରେ ବେଦନ ହସ୍ତ ଯୋଡ଼ିଣ ଉଠିଲା ବେଗ ।
ଆମ୍ଭେ ବୋଇଲୁଁ ଯେ ବରଦେବାତୋତେଯାହାଇଚ୍ଛାଯାହାମାଗ
ଶୁଣ ତୁ କୁମର ଅଟୁ ଯୋଗେଶ୍ୱର ସବୁଦିନେ ଆମ୍ଭ ଦାସ ।
ସେବା ଦେଖି ଆମ୍ଭେ ପ୍ରସନ୍ନ ହୋଇଲୁଁ ବୈକୁଣ୍ଠକୁ ଯିବା ଆସ
କୁମର ଭଣିଲେ ଶୁଣ ଚକ୍ରପାଣି ତୁମ୍ଭେ ଯେବେମୋତେଦେବ
ଶଙ୍ଖ, ଚକ୍ର, ଗଦା, ପଦ୍ମ ଚତୁର୍ଭୁଜ ବର୍ଣ୍ଣେମାନ ମୋତେ ଦେବ
ଭାଷିଲୁଁ ଯେ ଏବେ ନବଯୁବା ହୁଅ ବାଳକ ସ୍ୱଭାବ ଯାଉ ।
ଗଙ୍ଗାଙ୍କ କୂଳରେ ଜନମ ହୋଇଲୁ ଗଙ୍ଗାଧର ନାମ ହେଉ ।
ଏମନ୍ତ କହିଣ ସେଠାବରୁ ଆମ୍ଭେ ଗମନ କଲୁଁ ଉଛାଟେ ।
ବାଳକ ପୁତ୍ରକୁ ଘେନି ଅସୁଁ ଅସୁଁ ସାବିତ୍ରୀ ଦେଖିଲେ ବାଟେ ।
ଦୂରରୁ ଦେଖିଣ ବ୍ରହ୍ମାଙ୍କ ରମଣୀ ଶିରେ ଯୋଡ଼ି ବେଦନ କର ।
ବୋଇଲେ, ଆପଣ ଅନାଥର ନାଥ ମୋତେ ଅନୁଗ୍ରହ କର ।
ବହୁକଷ୍ଟ ପାଇ ଗର୍ଭରେ ଧରିଲି ଦଶ ମାସ ପୂର୍ଣ୍ଣ ହେଲା ।
କମଠର ଡିମ୍ବ ପ୍ରସବ ପ୍ରାୟକ ବିଫଳ ସବୁ ହୋଇଲା ।
ଏବେ ହେ ଶ୍ରୀହରି ଚିତ୍ତେ ଦୟା କରି ଅନୁଗ୍ରହ ମୋତେ କର ।
ତୁମ୍ଭର ସଞ୍ଚିଲା ହେଉ ଏ କୁମର ଥାଉ ସମୀପରେ ମୋର ।
ପ୍ରଭୁ ବୋଇଲେ, ଘେନିଅ ପଦ୍ମମୁଖି ବ୍ରହ୍ମାଙ୍କ ଜ୍ୟେଷ୍ଠା ସୁହାଗୀ
ଅନେକ ଅକୁଳ ହୋଇଣ ସାବିତ୍ରୀ ପୁତ୍ରକୁ ଘେନିଲେ ମାଗି ।
ଏମନ୍ତେ ତବନ୍ତେ କିଛିଦିନ ପରେ ବଢ଼ିଲା ସେ ଦ୍ୱିଜବତ୍ସ ।
ବଳବନ୍ତପଣେ କେହି ତ ତାହାକୁ ମହୀରେ ନୋହିଲେ କଛ ।
କିଛିକାଳ ସେହି ଜୀବନ ମୁକ୍ତି ହୋଇ ଗଙ୍ଗାଧର ନାମେ ଋଷି ।
ରଜନୀ ଦିବସେ ଗଙ୍ଗାକୂଳେ ଯାଇଁ ତପ କରୁଥାନ୍ତି ବସି ।
ଏମନ୍ତ ସମୟେ ଇନ୍ଦ୍ରର ଦୁହିତା ସୁଗନ୍ଧା ନାମେ ସୁନ୍ଦରୀ ।

ପୁଷ୍ପବତୀ ହେତୁ ସପ୍ତମ ଦିନରେ ଗଲା ଗଙ୍ଗାସ୍ନାନ କରି ।
ସ୍ୱର୍ଗ ରାଜ ରେମା ଅତ୍ୟନ୍ତ ସୁଷମା ପୁଣି ସେ ନବ ଯୁବତୀ ।
ସ୍ନାନ ସାରି ଓଦା ବସନେ ସୁନ୍ଦରୀ ନମିଲା ଋଷିଙ୍କ ପ୍ରତି ।
ତାର ମନୋହର ସମସ୍ତ ଶରୀର ବାସେ ପଡ଼ିଗଲା ଜଣା ।
ତେଣୁ ତପୋଧନ ମଦନ ଉତ୍ପନ୍ନ ତପ ତେଜ ହେଲେ ବଣା ।
ବଳାତ୍କାର କରି ସୁଗନ୍ଧାକୁମାରୀ ପାପ ଇଚ୍ଛା ପୂର୍ଣ୍ଣ କଲେ ।
ତେଣୁ ସେ ସୁନ୍ଦରୀ ଅତି କୋଧ କରି ଋଷିଙ୍କି ଶାପ ବହିଲେ ।
ବୋଇଲେ, ପାପିଷ୍ଠ ମୋର ଧର୍ମ ନଷ୍ଟ ଯେଣୁ କଲୁ ଅକାରଣ ।
ମର୍ତ୍ତ୍ୟମଣ୍ଡଳରେ ଜନ୍ମ ହୋଇ ତୋର ବେଶ୍ୟା ଘରେ ଯାଉ ପ୍ରାଣ
ଶ୍ରୀହରି ବୋଇଲେ, ଶୁଣ ପ୍ରାଣେଶ୍ୱରୀ ! ଏ ମହା ବିଷମ କଥା ।
ସୁଗନ୍ଧା ମୁନିଙ୍କି ଶାପ ଦେବା ଦେଖି ଆମ୍ଭଙ୍କୁ ଲାଗିଲା ବ୍ୟଥା ।
ଭକ୍ତଙ୍କର ଚିତ୍ତ ହେବାରୁ ଦୁଃଖିତ ତାହା ଜାଣି ବଡ଼େ କଲୁଁ ।
ମହାକୋପ ବହି ସେଠାରେ ପ୍ରବେଶି ସୁଗନ୍ଧାକୁ ଶାପ ଦେଲୁଁ ।
ଶୁଣ ଗୋ ସୁନ୍ଦରି ! ଇନ୍ଦ୍ରର କୁମାରୀ ଅର୍ଜିଲୁ ଅନେକ ପାପ ।
ଅମ୍ଭର ଭକ୍ତକୁ ନ ଜାଣି ବର୍ଜିଲୁ ତୋତେ ପଡ଼ୁ ମୋର ଶାପ ।
ତୁହି ଏବେ ଯାଇଁ ମର୍ତ୍ତ୍ୟେ ଜନ୍ମ ହୋଇ ଜାତିରେ ବେଶ୍ୟା ହୋଇବୁ
ସୁଗନ୍ଧା ନାମ ତୋ ଗୁପ୍ତ ହୋଇଥିବ ମଦନା ନାମ ବହିବୁ ।
ଏହି ମୁନି ପୁଣି ସଙ୍କର୍ଷଣ ନାମେ ଅଭ୍ୟାଗତ ହୋଇଥିବ ।
ଦେହଅନ୍ତେ ପୁଣି ସ୍ଥାନ ଭଲ ଜାଣି ତୋ ଗୃହେ ପ୍ରାଣ ହାରିବ ।
ତଦନ୍ତରେ ଆସି ବୈକୁଣ୍ଠରେ ବସି ଆମ୍ଭଙ୍କୁ ବର୍ଣ୍ଣନ କଲେ ।
ଶାପରୁ ମୁକ୍ତକୁ କରାଇ ଭକ୍ତକୁ ନମସ୍କାର କରିବୁଁ ହେଲେ ।
ଇନ୍ଦ୍ର କନ୍ୟା ମୁନି ଏଥି ଶାପ ଘେନି ମର୍ତ୍ତ୍ୟପୁରେ ଦେହ ଧରି ।
ସେହି ଦ୍ୱିଜବର ଭ୍ରାତୃଷ୍ପୁତ୍ର ହେଲା ଶୁଣ ଗୋ ସିନ୍ଧୁକୁମାରୀ ।
ତଦନ୍ତେ ସେ ନାରୀ ମର୍ତ୍ତ୍ୟେ ଦେହଧରି ଥୋକାଏ ଦିନ ରହିଲା
ମର୍ତ୍ତ୍ୟରୁ ଆସିଣ ଇନ୍ଦ୍ରର ଦୁହିତା ପରି ଜନ୍ମରେ ହୋଇଲା ।
ପ୍ରଭୁଙ୍କର ବାଣୀ ଲକ୍ଷ୍ମୀଦେବୀ ଶୁଣି ଛାଡ଼ିଲେ ହୃଦର ବ୍ୟଥା ।
ଉଦ୍ଧବ ବୋଇଲେ ଶୁଣ ଗୋପନାରି ! ଭକ୍ତ ନିଜପଦ କଥା ।

ଯେଉଁ ଶ୍ରୀହରିଙ୍କି ଦର୍ଶନ କରନ୍ତେ ହୁଅଇ ବୈକୁଣ୍ଠ ଭେଟ ।
ବଶ ହୋଇ ଭକ୍ତ ଅମଡ଼ା ମାଡ଼ିଲେ ଆପଣେ କଡ଼ାନ୍ତି ବାଟ ।
ଦୁଷ୍ଟଜନ ଗଞ୍ଜି ଭକ୍ତମନ ରଞ୍ଜି ଦୁଃଖ ଦୁରିତମାନ ହରନ୍ତି ।
ପତିତପାବନ କୃପାସିନ୍ଧୁ ବୋଲି ଏ ନାମ ପାଇ ଅଛନ୍ତି ।
ଆମ୍ଭର ଜନମ ଅନ୍ୟ ହେଲା ଧନ୍ୟ ଜଗତରେ ଅଟୁ ପାପୀ ।
ତୁମ୍ଭଠାରେ ଏବେ କୃଷ୍ଣକଥା ଶୁଣି ନିସ୍ତାର ପାଇବୁଁ ଗୋପୀ ।
ପତିତପାବନ କୃପାସିନ୍ଧୁ ବୋଲି ଜଗତ ମୁଖରେ ଭଣି ।
କାହୁଁ ଏହି ନାମ କେମନ୍ତେ ପାଇଲେ କେହିତ ଏହା ନ ଜାଣି ।
ଉଦ୍ଧବ କହିଲେ, ଶୁଣ ଗୋପନାରୀ ଏ ମହା ଗୁପତ ବାଣୀ ।
ପ୍ରଭୁ ଯହୁଁ ମୋତେ ଶ୍ରୀମୁଖେ କହିଲେ ତେଣୁ ସିନା ମୁହିଁ ଜାଣି
ତ୍ରେତାଯୁଗ ଆସି ଭୋଗ କରଗଲା ନବେ ସହସ୍ର ବରଷ ।
ପ୍ରଜାପତିଙ୍କର ଜନମ ହୋଇଲେ ଷାଠିଏ ହଜାର ଶିଷ୍ୟ ।
ସମସ୍ତ କୁମାର ଗର୍ବେ ମତ୍ତହୋଇ ଖେଳୁଥିଲେ ସିନ୍ଧୁତଟେ ।
ଏମନ୍ତ ସମୟେ ଅଷ୍ଟାବକ୍ର ଋଷି ଯାଉଛନ୍ତି ସେହି ବାଟେ ।
କର କଟିଭାଗ ପାଦ ସହିତରେ ସଳଖ ନୁହଇ ଯେଣୁ ।
ବଦନ ନାସିକା କର୍ଣ୍ଣ ବକ୍ର ଅଟେ ଅଷ୍ଟାବକ୍ର ନାମ ତେଣୁ ।
ସମସ୍ତ ଅଙ୍ଗର ପ୍ରସନ୍ନ ବଦନ ପୃଥିବୀରେ ହୋଇ ଛିଡ଼ା ।
ଚାଲନ୍ତି ସଧୀରେ ଝୁଲି ଝୁଲି ପାଦ ପକାଇ ଅଳପ ଛଡ଼ା ।
ଏମନ୍ତ ରୂପକୁ ଦେଖି ବାଳଗଣ ଅସନ୍ତ ଆନନ୍ଦ ହୋଇ ।
ସମସ୍ତ କୁମରେ କରତାଳି ଦେଇ ହସନ୍ତି ଆନନ୍ଦ ହୋଇ ।
ଏ କି ବିପରୀତ ସୁନ୍ଦର ମନୁଷ୍ୟ ବୋଲିଣ ସମସ୍ତ ବଟେ ।
କରତାଳି ମାରି ଆନନ୍ଦ ହୋଇଣ ଗୋଡ଼ାଇଲେ ଋଷିପଛେ ।
କେତେ ବାଳକ ଗର୍ବେ ହୋଇ ମତ୍ତ ଦିଅନ୍ତି ବାଲି ପକାଇ ।
ଋଷିଙ୍କର ପ୍ରାୟ ହୋଇ ଅଷ୍ଟାବକ୍ର ଅଗ୍ରରେ ଚାଲନ୍ତି ଯାଇଁ ।
କେ ବୋଲନ୍ତି ଏହି ମନୁଷ୍ୟ ଗୋଟିକୁ ଆମ୍ଭ ଭୁବନକୁ ନେବା
ପୁରଲୋକେ ଦେଖି ସାନନ୍ଦ ହୋଇବେ ପଛେ ପୁଣି ଛାଡ଼ିଦେବା ।
ଏମନ୍ତ ଭାଷିଣ ଋଷିଙ୍କ ପାଦକୁ ଆକର୍ଷି ଧଇଲେ ଯେଣୁ ।

ଦେଖିଣ ସେ ଋଷି କ୍ରୋଧଭର ହୋଇ ଶାପଦେଲେ ତାଙ୍କୁତେଣୁ
ବୋଇଲେ ଶୁଣରେ ବ୍ରହ୍ମାଙ୍କ କୁମରେ, ଅର୍ଜିଲ ଅନେକ ପାପ '
ଦୋଷଗୁଣେ ଦଣ୍ଡ ପ୍ରାପତ ହେଉରେ ତୁମ୍ଭଙ୍କୁ ଦଉ୍ଛିମୋ ଶାପ ।
ଶତେ ଜନ୍ମଯାଏ କୁମ୍ଭୀପାକେ ତୁମ୍ଭେ ପତିତ ହୋଇଣ ଥିବ ।
ତଦନ୍ତରେ ପୁଣି ଶ୍ରୀହରି ଦର୍ଶନେ ବୈକୁଣ୍ଠପୁରକୁ ଯିବ ।
ଆହୁରି ତୁମ୍ଭଙ୍କୁ ବଚନ କହୁଛୁଁ ଶୁଣିବ ଯେମନ୍ତେ ପାପ ।
କ୍ଷୀଣ ଏ ବନରେ ପାପକ୍ଷୟ ଯିବ ପାଦପଦ୍ମ ଯେବେ ଜପ ।
ଏମନ୍ତ କହିଣ ସେଠାରୁ ଶୀଘ୍ରରେ ମଠକୁ ଆସିଲେ ଋଷି ।
ପ୍ରଜାପତି ପୁତ୍ରେ ନଳବେଣ ଛାଡ଼ି କୁମ୍ଭିପାକ କୁଣ୍ଡେ ପଶି ।
ଷଟେକ ଯୋଜନ କୁମ୍ଭୀପାକ ସ୍ଥାନ ଗଭୀର ପଞ୍ଚାଶ ତାଳ ।
ଫିଟିଣ ଯିବାକୁ ପଥ ନ ପାବନ୍ତି ତହିଁରେ ଅଟେ ବିଶାଳ ।
ତାହାର ଭିତରେ ପ୍ରଜାପତି ସୁତେ ରହିଲେ ବହୁତ ଦୁଃଖେ ।
ପାଦପଦ୍ମ ବେନି ଅନବରତରେ ଜପ ଧ୍ୟାନ କଲେ ସୁଖେ ।
ଭୋଜନ ଶୟନ ଆଦି ଯେତେ କର୍ମ ସର୍ବ ତ୍ୟାଗ କଲେ ମୁନି ।
ପାଦପଦ୍ମ ବୋଲି ପ୍ରଜାପତି ସୁତେ ନିରନ୍ତରେ କଲେ ଧ୍ୱନି ।
ତାହାଙ୍କର ସେବା ଦେଖି ଚକ୍ରପାଣି ବିଚାରନ୍ତି ମନେ ମନ ।
ଆମ୍ଭ ପାଦପଦ୍ମ ଏମାନେ ଭଜିଣ ପାଇବେ କଷ୍ଟେଁ କାରଣ ।
ପ୍ରଭୁ ବୋଇଲେ ହେ ବାଳକକୁମରେ ! କାହିଁପାଇଁ କଲ ସେବା
ତୁମ୍ଭ ସେବା ଦେଖି ପ୍ରସନ୍ନ ହୋଇଲି, ବର ମାଗ ଏବେ ଦେବା
ପ୍ରଭୁଙ୍କର ବାଣୀ ପାପୀମାନେ ଶୁଣି ବୋଇଲେ ଶୁଣ ଗୋସାଇଁ
ଅତି ଗଭୀର ଏ କୁମ୍ଭୀପାକ ଅଟେ ଉଠିବାକୁ ପଥ ନାହିଁ ।
ଏବେ ହେ ଶ୍ରୀହରି ହୁଅନ୍ତେ ଦୟାକରି କଷ୍ଟେଁ ଯେବେ ଦେବବର
ପାଦପଦ୍ମ ବେନି ପାବଛି ହୋଇବ ଏଥୁ ଆମ୍ଭଙ୍କୁ ଉଦ୍ଧର ।
ତାହାଙ୍କର ବାଣୀ ଶୁଣି ଚକ୍ରପାଣି ଭାବଗ୍ରାହୀ ନାରାୟଣ ।
ଆସ ଆସ ବୋଲି ଭକତଙ୍କଠାକୁ ବଢ଼ାଇଦେଲେ ଚରଣ ।
ଅଭୟ ସେ ପାଦ ଅମୃତରୁ ସ୍ୱାଦ ବିକାଶନ୍ତି ଚକ୍ରଧର ।
କୁମ୍ଭୀପାକ ପୁର ଭସ୍ମ ହୋଇଯାଇ ହୋଇଲା ବୈକୁଣ୍ଠପୁର ।

ଜମିଷମାନଙ୍କେ ଯେଉଁ ପାଦପଦ୍ମ ବିକାଶିଲା ନବସୃଷ୍ଟି ।
ଯେଦ୍ଧ ପାଦ ଧରି ପାପୀଜନମାନେ ଦୁସ୍ତରୁ ଅସିଲେ ତରି ।
ଅଚ୍ୟୁତଚରଣ ଧରିବା ମାନଙ୍କେ ଛିଡ଼ିଲା ଦୂରକୁ ବ୍ୟଥା ।
ଷାଠିଏ ଦିନରେ ଶାପୁ ମୁକ୍ତ ହେଲେ ପୂର୍ବର ଏମନ୍ତ କଥା ।
ପ୍ରଭୁଙ୍କ ଦ୍ରୁହିଣ ପ୍ରଜାପତି ସୁତେ ବୋଲନ୍ତି ଶୁଣ ଶ୍ରୀଧର ।
ଆପଙ୍କଙ୍କଠାରେ ଗୋଟିଏ ପ୍ରାର୍ଥନା ଅଛି ଆମ୍ଭମାନଙ୍କର ।
ନିଷ୍ଟସ୍ତୁ ଯେବେବେହେଁ ପ୍ରସନ୍ନ ହୋଇଲ ତୁମ୍ଭର କୀର୍ତ୍ତି ରହିବ ।
ପତିତପାବନ ନାମ ଗୋଟି ତୁମ୍ଭେ ଆମ୍ଭରଠାରୁ ବହିବ ।
ଭକ୍ତଙ୍କର ବାଣୀ ଶୁଣି ଚକ୍ରପାଣି ଅତି ସନ୍ତୋଷ ହୋଇଲେ ।
ହେଉ ବୋଲି ପ୍ରଭୁ ପ୍ରସନ୍ନ ହୋଇଣ ବୈକୁଣ୍ଠପୁରେ ମିଳିଲେ ।
ଉଦ୍ଧବ ବୋଇଲେ ଶୁଣ ଗୋପନାରି ! ତୁମ୍ଭେ ଆଜ୍ଞା ଦେଲ ଯାହା
ଅନେକପ୍ରକାରେ ପ୍ରଭୁଙ୍କ ମହିମା ଶ୍ରୀମୁଖରେ କହିଲି ତାହା ।
ପତିତମାନଙ୍କୁ ପାଦପଦ୍ମ ଦେଇ ପାବନ୍ତି ହୋଇଲା ଯେଣୁ ।
ପତିତପାବନ ନାମ ଗୋଟି ପ୍ରଭୁ ସେଠାରୁ ପାଇଲେ ତେଣୁ ।
ଗୋପୀଏ ବୋଇଲେ ଶୁଣହେ ଉଦ୍ଧବ ! ଜ୍ଞାନମାର୍ଗ ତୁମ୍ଭେ ଦେଲ
ଆମ୍ଭେମାନେ ଶୁଣି ମୁକତ ହୋଇଲୁଁ ଛାଡ଼ିଲା ପାପ ସକଳ ।
ଅତ୍ୟନ୍ତ ଗୁପତ ବେଦୁଁ ବଡ଼ ତତ୍ତ୍ୱ ଏବେ ଜାଣିଲୁ ଗୋସାଇଁ
କୃପାସିନ୍ଧୁ ବୋଲି ପ୍ରଭୁଙ୍କ ମହିମା ଏ ନାମ ପାଇଲେ କାହିଁ ।
ଉଦ୍ଧବ ବୋଇଲେ ସେ କଥା ଶୁଣିଲେ ଜନ୍ମର ଦୁଃଖ ନାଶିବା
କୃପାସିନ୍ଧୁ ନାମ ଯହୁଁ ଅବତାର ତାହା ତୁମ୍ଭଙ୍କୁ କହିବା ।
ଶ୍ରୀକୃଷ୍ଣ ପୁରାଣ କର୍ଣ୍ଣପଥେ ଶୁଣି ପୂର୍ବକଥାର ଉପମା ।
ନଳ କୁବେରଙ୍କ ସୁତ ଦୁଇଗୋଟି ଗୋବତ୍ସ ବିବତ୍ସ ନାମ ।
ବାଳକ ସ୍ୱଭାବ ଅଳ୍ପଦିନେ ଗଲା ବିଷ୍ଣୁ ପୁରାଣ ଶୁଣିଲେ ।
ଧର୍ମ କଥା ଛାଡ଼ି ଅନ୍ୟେ ପାରି ନାହିଁ ଏମନ୍ତ ବୋଲି ମଣିଲେ ।
ଜ୍ୟେଷ୍ଠ ପୁତ୍ର ତାର ଗୋବତ୍ସ ନାମରେ ଈଶ୍ୱରଙ୍କୁ ସେବା କରେ ।
ନିଶି ଦିବସରେ ଆସନରେ ବସି ଶିବ ନାମ ଏକା ଧରେ ।
କନିଷ୍ଠ କୁମର ବିବତ୍ସ ତା ନାମ ବିଷ୍ଣୁ ପାଦେ ଚିତ୍ତ ଦେଇ ।

ସଂସାରର ଭୋଗ ସବୁ ତ୍ୟାଗ କଲା ବାଳକ କୁମର ହୋଇ ।
ଏକ ଦିନକରେ ସଙ୍ଗେ ବେନିଭାଇ ସମୁଦ୍ର ତୀରକୁ ଗଲେ ।
ନିତ୍ୟକର୍ମ ସାରି ଯେ ଯାହା ପ୍ରଭୁଙ୍କୁ ଅନ୍ତର୍ଗତେ ଲକ୍ଷ୍ୟ କଲେ ।
ଗୋବସ୍ତ୍ର କୁମର ଶିବ ନାମ ଧରେ ବିବସ୍ତ୍ର ଶ୍ରୀହରି ଧରେ ।
ରାମ ନାରାୟଣ ନାମ ଉଚ୍ଚାରଣ ଘୋରତର ଶବ୍ଦ କରେ ।
ହରଷ ହୋଇଣ ଶୀଘ୍ର ଜପୁଥାଇ କ୍ଷଣେହେଁ ନାହିଁ ବିଶ୍ରାମ ।
ଜ୍ୟେଷ୍ଠ ଭ୍ରାତା ଦେଖି ମନେ କୋପ କଲା ଆକ୍ଷେ ଧରିବାରୁ ନାମ
ବୋଇଲା ବିବସ୍ତ୍ର, ଶୁଣରେ ପାପିଷ୍ଠ ଏମନ୍ତ ଗରବ ବହୁ ।
ମୋର ପ୍ରଭୁ ଥାଉଁ ତୋର ପ୍ରଭୁ ନାମ ବଡ଼ କରି କିପାଁ କହୁ ।
ସେ ଯେଉଁ ଈଶ୍ୱର ଯୋଗୀ ଯୋଗେଶ୍ୱର ଭକତଙ୍କ ବନ୍ଧୁ ସେହି
ତ୍ରିଶୂଳ ଡମ୍ବରୁ ବିଭୂତିଭୂଷଣ ନ ଜାଣୁ କି ରୁଦ୍ର ବାନା ।।
ବିବସ୍ତ୍ର କହିଲା, ଶୁଣ ଜ୍ୟେଷ୍ଠଭ୍ରାତ ସବୁ କଥା ଆମ୍ଭେ ଜାଣୁ ।
ନାରାୟଣ ବିନା ଯେତେକ ଦେବତା ସାମାନ୍ୟ ପରାୟେ ମଣୁ ।
ତୋହର ସାମନ୍ତ ଯେବେ ବଳବନ୍ତ ପରୀକ୍ଷା କରିବା ତାହା ।
ଗୋବସ୍ତ୍ର ବୋଇଲା, ସେ କଥା ପ୍ରମାଣରୁ ଏବେ ବୋଲିବୁ ଯାହା ।
ବିବସ୍ତ୍ରର ବାଣୀ ଶୁଣି ସୁରମଣି ଅଧିକ ବିସ୍ତର ନାହିଁ ।
ଯେ ଯାହାର ପ୍ରଭୁ ନାମ ଧରି ଡାକ ସିନ୍ଧୁ ଭିତରକୁ ଯାହିଁ ।
ଯାହାର ସାମନ୍ତ ହେବ ବଳବନ୍ତ ଭକ୍ତକୁ ହୋଇବେ ପିଠି ।
ମୀନ ଦୁଇଗୋଟି ଚିହ୍ନିତ ରଖିବ ଡାକିଲେ ଆସିବେ ଉଠି ।
ପରୀକ୍ଷାର ବାଣୀ ଶୁଣି ଏହିକ୍ଷଣି କେ ସାନ କେ ବଡ଼ ହୋଇ ।
ତୁମ୍ଭ ପ୍ରଭୁ ନାମ ରାଘବ ହୋଇବ ଆମ୍ଭ ପ୍ରଭୁ ନାମ ରୋହୀ ।
ଏମନ୍ତ ଭାଷିଣ କୁବେର ବାଳକେ ଆସନ ଉପେକ୍ଷି ଯାଇଁ ।
ରୋହୀ ନାମ ଏକ ରାଘବ ଆରେକ ଡାକନ୍ତି ସିନ୍ଧୁକୁ ଯାହିଁ ।
ଗୋବସ୍ତ୍ର କୁମର ଡାକେ ନିରନ୍ତର ସଦାଶିବ ନାମ ଘେନି ।
ଘଡ଼ି ଦୁଇ ଅନ୍ତେ ଓଷ୍ଠ କଣ୍ଠ ଶୁଖି ଫାଟିବାରୁ ହେଲା ତୁନି ।
ବିବସ୍ତ୍ର ଶୁଣିଣ ମନେ ମନେ ଗୁଣି ସ୍ମରି କରି ଜଗବନ୍ଧୁ ।
ହରି ନାମ ଧରି ଘନ ଘନ ଡାକେ ଜାଣିଲେ କରୁଣାସିନ୍ଧୁ ।

ବେଶଭରରେ ହର ଜଗତବହାସ୍ତ ଭକତ ଭବକୁ ବାଇ ।
ମୀନରୂପ ଧରି ସମୁଦ୍ର ଭିତରୁ କୂଳକୁ ପଡ଼ିଲେ ଡେ଼ଇଁ ।
ଭକତର ମନ ଜାଣି ନାରାୟଣ ଜଳରୁ ଉଠି ଆସିଲେ ।
ଦେଖିଣ ବବଷ୍ଟ ମନେ ହୋଇ ତୋଷ ପ୍ରଭୁଙ୍କୁ ତୋଳି ଧଇଲେ
ଶ୍ରୀଅଙ୍ଗର ଧୂଳି ସ୍ୱଅଙ୍ଗରେ ବୋଳି ଥୋକାଏ ଶିରରେ ଧରି ।
ଜ୍ୟେଷ୍ଠ ଭ୍ରାତା ମୁଖ ଗ୍ଭହିଁଣ ହସିଲେ ପରିହାସ ପ୍ରାୟ କରି ।
କହିଲେ, ହେ ଭ୍ରାତ ଆମ୍ଭ ପ୍ରଭୁ ନନ୍ଦ ସେବିଲି ଶିବ ଚରଣ ।
ତୁମ୍ଭଙ୍କ ପ୍ରସନ୍ନ ହେଲେ ସଦାଶିବ ବର ମାଗି ଏବେ ଘେନ ।
ଶୁଣିଣି ଗୋବସ୍ତ ମନେ ଗର୍ବ ବହି ବବଷ୍ଟେ ବହିଲି କୋପ ।
କନିଷ୍ଠ ହୋଇଣ ଜ୍ୟେଷ୍ଠକୁ ନନ୍ଦିଲୁ ତୋତେ ପଡ଼ୁ ମୋରଣ ସ୍ୟ
ଏ ମୀନକୁ ଦେଖି ମନେ ଗର୍ବ ରଖି ମୋତେ କଲୁ ଅପମାନ ।
ମର୍ତ୍ତ୍ୟମଣ୍ଡଳରେ କୈବର୍ତ୍ତ ଗୃହରେ ଅବଶ୍ୟ ହେବୁ ଜନମ ।
ଆହୁରି ଗୋଟିଏ ବଚନ କହିବା, ଶୁଣ ରେ ପାମର ମନ୍ଦ ।
ମରଣ ସମୟେ ବେନି ଚକ୍ଷୁ ତୋର ଅଭ୍ରଷ୍ଟ ହୋଇବ ଅନ୍ଧ ।
ଜ୍ୟେଷ୍ଠ ଭ୍ରାତା ମୁଖୁ ଏମନ୍ତ ଶୁଣିଣ ବବସ୍ତ ହୋଇଲି ଦୁଃଖୀ ।
ସୁମନ୍ତକ ଋଷି ତପ କରୁଥିଲେ ତାହାଙ୍କୁ କଲି ସେ ସାକ୍ଷୀ ।
କହୁଅଛି ତୁମ୍ଭେ ଯୋଗେଶ ପୁରୁଷ ଭବରେ ବଶ ନୋହିବା ।
ଦୁଇ ଲୋକଙ୍କର ମଧ୍ୟସ୍ଥ ହୋଇଣ ଯଥାର୍ଥ କଥା କହିବ ।
ମୁନି କହୁଛନ୍ତି, ଶୁଣ ହେ ବବସ୍ତ କଥା ଏ କହିବା ତୋତେ ।
ଶିବଙ୍କର ନାମ ଯେଉଁ ଲୋକ ଜପେ ତାହାଙ୍କର ଜ୍ଞାନ କେତେ ।
ସ୍ୱଭାବରେ ହର ଶ୍ମଶାନରେ ଘର ତମ ଘେନ ତାଙ୍କ ବୃତ୍ତି ।
ପିତାଗୁଣେ ପୁନ ସମ୍ଭବ ହୋଇଲେ ନ ଛାଡ଼ନ୍ତି ଯେ ପ୍ରକୃତି ।
ଏବେ ହେ ବବସ୍ତ ହେତୁ ତୋରଅଛୁ ଆମ୍ଭଙ୍କୁ ଭେଟିଲୁ ଯେଣୁ
ଗୋନ୍ଦ୍ରସା ଶାପକୁ ମୁକ୍ତ କରି ତୋତେ ବର ଯାଚଦେବା ତେଣୁ
ଯେଉଁ ମୀନକୁ ତୁ କରେ ଧରିଅଛୁ ଛାଡ଼ିଦିଅ ସିନ୍ଧୁ ଜଳେ ।
ଅନ୍ୟ ଜନମରେ ସୁବର୍ଣ୍ଣର ମୀନ ପ୍ରାପତ ହୋଇବ ବଳେ ।
ସମସ୍ତର ଅନ୍ତେ ଅଳ୍ପଦନ ଯାନ୍ତେ ଦେଖିବ ଶ୍ରୀବନମାଳୀ ।

ଅମ୍ବରତୋଟେ ଅସ୍ତ ହେଉବୋଲି ଶଙ୍ଖ ନାଳଦେଲେ ଢୋଲ
ଋଷିଙ୍କର ବାଣୀ ବିବସ୍ତ୍ର ତା ଶୁଣି ମନରେ ସନ୍ତୋଷ ହେଲା ।
ଜ୍ୟେଷ୍ଠଭ୍ରାତା ଶାପ ପ୍ରାପତ ହେବାରୁ ମର୍ତ୍ତ୍ୟପୁରେ ଜନମିଲା ।
କୈବର୍ତ୍ତ ଗୃହରେ ଜନ୍ମ ହୋଇ ପୂତ ପୂର୍ବ ହେତୁ କଲା ଲୁପ୍ତ ।
ନିତ୍ୟ ଜୀବିକାରେ ସଦ୍‌ବୃତ୍ତି କରନ୍ତେ ବର୍ଦ୍ଧିତ ହୋଇଲା ଦୀପ୍ତ ।
କୁମର ଦୁହିତା ମାତା ପିତା ଭ୍ରାତା ଏମାନେ ହୋଇଲେ ନାଶ
ରମଣୀକୁ ଘେନି ଏକାନ୍ତେ ରହିଲା ନଳ କୁବେରଙ୍କ ଶିଷ ।
ଅନାଥର ପଣେ ବୁଲେ ଏଣେ ତେଣେ ବର୍ଦ୍ଧିତ ହୋଇଲା କଷ୍ଟ
ଯଥାର୍ଥ କାଳକୁ ଶାପ ଅନୁକ୍ରମେ ବେଦନ ଚକ୍ଷୁ ହେଲା ନଷ୍ଟ ।
ଦେଖୁଣରେ ଅନ୍ଧ ଅଟେ ବଡ଼ ବୃଦ୍ଧ ବେପାର କରି ନ ପାରେ ।
ଗୃହର ଭିତରେ ଦୁଃଖେ ସୁଖେ ଥାଇ ରାମ ନାମ ଏକା ଧରେ ।
ଦିନକରେ ପୁଣି ମନେ ମନେ ଗୁଣି ଗୃହରୁ ବାହାର ହେଲା ।
ଶରଧାରେ ସେହି ରାମା ହସ୍ତ ଧରି ନଦୀକୁ ଗାଧୋଇ ଗଲା ।
ସ୍ନାନ ସାରି ଫେରି ଆସିବା ସମୟେ ଦିନମଣି ଉଦେ ହେଲେ ।
ପୁରାତନ କୂପ ପଥ ମଧ୍ୟେ ଅଛି ରମଣୀ ଦେଖିଲା ଡୋଳେ ।
କୂପ ନିକଟରେ ନେଇ ସ୍ଥିତ କରି ଜଳକୁ ଚାହିଁ ରହିଲା ।
କୂପର ଭିତରେ ମୀନ ଅଛି ଜାଣି ପତିଙ୍କ ଆଗେ କହିଲା ।
ତାହା ଶୁଣି ସ୍ୱାମୀ ବୋଲଇ ତରୁଣୀ କଣ୍ଟା ଗୋଟିଏ ତୁ ଆଣ ।
ଏହି କୂପେ ଆଣି ବଡ଼ଶୀ ପାତିବା ଅବଶ୍ୟ ପଡ଼ିବ ମୀନ ।
ଆଜ ଦିବସରେ ଉପବାସ ଅଛୁଁ କାଲିକ ଯେ ଅନ୍ନ ନାହିଁ ।
ନିତ୍ୟ ବୃତ୍ତି କଲେ ଅବଶ୍ୟ ଦିଅନ୍ତି ଭକତବନ୍ଧୁ ଗୋସାଇଁ ।
ଏମନ୍ତ କହିଣ ସେଠାରୁ ଯାଇଣ ପ୍ରବେଶ ହେଲେ ଗୃହରେ ।
ପରଦିନ ଆସି ଥୋପକୁ ଗୁନ୍ଥିଣ ପାତିଲେ କୂପ ମଧ୍ୟରେ ।
ନିଷ୍ଠଳରେ ବସି କୃଷ୍ଣ ନାମ ଘୋଷି ଯୋଗଧ୍ୟାନ କଲା ସେଣୁ ।
ଆତଙ୍କଭଞ୍ଜନ ଯଶୋଦା ନନ୍ଦନ ପ୍ରସନ୍ନ ହୋଇଲେ ତେଣୁ ।
ଭକ୍ତଙ୍କର ଦୁଃଖ ଦେଖି ପଦ୍ମମୁଖ କୂପେ ଆସି ବିଜେ କଲେ ।
ସୁବର୍ଣ୍ଣର ମୀନ ଗୋଟିଏ ହୋଇଣ ବଡ଼ଶୀ ଥୋପ ଗିଳିଲେ ।

ଝାଙ୍କିଲେ ଶ୍ରୀହରି ବଉଁଶୀକୁ ଧରି କହିଲେ ଏମନ୍ତ ଜାଣୁ ।
ଅନ୍ଧ ନୟନକୁ ନ ଦିଶଇ ବୋଲି ଓଟାରି ହୋଇଲେ ତେଣୁ ।
କୂପର ଭିତରୁ ସମ୍ଭୃତ ହୋଇଣ ଅଲ୍ଲାଟଦେଲେ ଚଉବାହା ।
ଶୁଣ ତୁ ହେ ଅନ୍ଧ ନିଧି ହେଲା ପ୍ରାପ୍ତ ନୟନ ଫିଟିଲା ଚାହିଁ ।
ପ୍ରଭୁଙ୍କର ବାଣୀ ଦୁଃଖୀ ଅନ୍ଧ ଶୁଣି ନୟନ ଫିଟିଲା ଗୃହେ ।
ଦେଖିଲା ବଉଁଶୀ ଥୋପରେ ଲାଗିଛି ସୁବର୍ଣ୍ଣ ଗୋଟି ଏ ।
ଅମୂଲ୍ୟ ରତନ ପୃଥିବୀରେ ନାହିଁ ବିକାଶି ପାଉଛି ଶୋଭା ।
କୂପର ଭିତରୁ ବାହାର ହୋଇଣ ଚତୁର୍ଭୁଜେ ଦେଲେ ଦେଖା ।
ପ୍ରସନ୍ନ ହୋଇଣ ଧୀବରକୁ ଚାହିଁ ବୋଇଲେ ଶାରଙ୍ଗଧର ।
ବର ନ ମାଗିଣ କିମ୍ପା ତୁନି ହେଲୁ ଶୁଣ ହେ ଭକତ ବର ।
କଇବର୍ତ୍ତ କହେ, ଶୁଣ ଭବଗ୍ରାହି ! ଅନୁଗ୍ରହ କଲ ଯେବେ ।
କୋଟି ଗଜଲକ୍ଷ୍ମୀ ପ୍ରାପତ ହୋଇଛି କି ବର ମାଗିବି ତେବେ
ଏବେ ଶ୍ରୀଚରଣେ ଚିତ୍ତ ରହୁ ମୋର ଅନ୍ୟ ନ ମାଗଇ ଆଉ ।
କୂପର ଭିତରୁ ସମ୍ଭୃତ ହୋଇଲ କୃପାସିନ୍ଧୁ ନାମ ହେଉ ।
ଶ୍ରୀହରି ଶୁଣିଣ ହୃଦେ ଦୟା କରି ବୋଇଲେ ଏ କଥା ସତ ।
ଯାହାର ଯେ ସେବା ମୁଁ ହୃଦେ ଜାଣଇ ସେ ମୋ ସେପରି ଭକତ
ଯେ ହେତୁ ମୁଁ ଆସି କୂପଜଳେ ପଶି ପ୍ରକାଶ ହୋଇଲି ଜାଣ
ନିଜ ରୂପ ଧରି ତୋତେ ବର ଦେବି ଏ କଥା ମୋର ପ୍ରମାଣ ।
ଏବେ ତୁହି ଯାଇ ସନ୍ତୁଷ୍ଟ ହୋଇଣ ମନରୁ ତାପ ଉପେଖ ।
କୋଟି ଗଜଲକ୍ଷ୍ମୀ ପ୍ରାପତ ହୋଇଛି ଗୃହକୁ ଯାଇଣ ଦେଖ ।
ଅମରମଣ୍ଡଳେ ଭୁଞ୍ଜି ଦିବ୍ୟଭୋଗ କରୁ ସମୟ ଅନ୍ତରେ ।
ଦେହ ଶୁଦ୍ଧ ପୂର୍ବ ବାସନା ଯେଣିଣ ଆସିବୁ ବୈକୁଣ୍ଠପୁରେ ।
ଏ ଭାବରେ ତାହୁଁ ଭକ୍ତ କହୁ କହୁଁ ଅନ୍ତର୍ଦ୍ଧାନ ହେଲେ ହରି ।
ଉଦ୍ଧବ ବୋଇଲେ, କୃପାସିନ୍ଧୁ ନାମ ଶୁଣ ଗୋପାଳଙ୍କ ନାରୀ ।
ଭକତମାନଙ୍କ ମାନ ଉଦ୍ଧାରଣ ବିକଚ କମଳ-ଡୋଳା ।
ଧ୍ୟାନକୃଷ୍ଣ ଦାସ ଶରଣ ସେ ପାଦେ ଭାବକୁ ବାନ୍ଧିଛି ଭେଳା ।



## ତୃତୀୟ ଛାନ୍ଦ

ହିଂସା ଅନ୍ତଙ୍କ ର ପରାପରେ ଭେଦ ଥାଏ ମିତ୍ର ନାହିଁ ଯାକୁ ।
ଅନେକବ୍ରହ୍ମାଣ୍ଡ ଯେ ପ୍ରଭୁ ଧରିଛି ଭକତ ବହୁଛି ତାଙ୍କୁ ।
ଏମନ୍ତ ପୀଏ ବୋଇଲେ ତା କାହୁଁ ଜାଣିବା ମନରେ ବିଶ୍ୱାସନାହିଁ
... ଜାଣ ତାହାଙ୍କ ମହିମା ବିସ୍ତାରି କହ ଗୋସାଇଁ ।
ଶୁ... ଇଲେ ଯେ କଥା କହିଲେ ମନେ ପ୍ରତେ ଯିବଟିକି ?
ଗୋପୀଏ ବୋଇଲେ ଅନ୍ୟ ମନ ହେଲେ ହୋଇବୁ ମହାପାତକୀ
ଉଦ୍ଧବ ବୋଇଲେ ଗୋପନାରୀମାନେ ! ଦୃଢ଼ଚିତ୍ତ କରି ଶୁଣ ।
ଯଥା ଉଚିତରେ ବିସ୍ତାର କରିବା ପ୍ରଭୁଙ୍କ ମହିମା ଗୁଣ ।
ସତୁରୀସହସ୍ର ଯେ ଜନ ଅଟଇ ପୃଥିବୀ ଦେବୀର ଦୀର୍ଘ ।
ତାହାଙ୍କ ଗରବ ଖରବ କରିଣ ବହିଅଛି ସର୍ପରାଜ ।
ବାସୁକିର ତଳେ ନିର୍ମାଣ ପୁରେକ କୂର୍ମ ତାହା ଅଛି ବହି ।
କୂର୍ମର ପୃଷ୍ଠରେ ବାସୁକୀ ରହିଛି ସ୍ଥିତା ରକ୍ଷ ପ୍ରାପ୍ତ ହୋଇ ।
କୂର୍ମର ତଳେ ଯେ ପୁରେକ ଭିଆଣ ଅନେକ ବିସ୍ତାର ବମ୍ଭ ।
ଅଠଶ ଅଠାଶୀ ସହସ୍ର ଯୋଜନ ଅଟଇ ସେ ପୁର ଲମ୍ବ ।
ନାରାୟଣଙ୍କୁ ଯେ ମନେ ଚିନ୍ତା କରି ମଣ୍ଡୁକୀ ଅଛି ତା ବହି ।
ମଣ୍ଡୁକୀ ପୃଷ୍ଠରେ କୂର୍ମ ରହିଅଛି ତଳପ୍ରେପା ପ୍ରାପ୍ତ ହୋଇ ।
ମଣ୍ଡୁକୀର ତଳେ ପୁରେକ ନିର୍ମିତ ଜମ୍ବୁନଦୀ ସମ ବର୍ଣ୍ଣ ।
ପଞ୍ଚଦଶ ଲକ୍ଷ ସପତ ଅଯୁତ ପାଞ୍ଚ ସହସ୍ର ଯୋଜନ !
ଶତ୍ରୁମିତ୍ର ପରାପର ଭେଦ ନାହିଁ ସେ ପୁର ଲୋକଙ୍କ ବିଚେ ।
ଦ୍ୱାଦଶ ଆଦିତ୍ୟ ଷୋଳକଳା ଇନ୍ଦ୍ର ଉଦ୍ଭବ ପ୍ରାପ୍ତ ହୋନ୍ତି ନିତ୍ୟେ
ଅତି ମନୋହର ସେପୁର ସୁନ୍ଦର ବଚନେ ନୁହଇ କହି ।
ଅନନ୍ତ ଭୁଜଙ୍ଗ ଉପରେ ବସିଣ ବସ୍ତୁ ତାକୁ ଛନ୍ତି ବହି ।
ତାହା ତଳବେଶେ ଯେ ପୁର ନିର୍ମାଣ ଧବଳ ସମୁଦ୍ରମଧ୍ୟେ ।
କ୍ଷୀରମାନଙ୍କର ଲହରୀ ଉଠୁଛି ଚଉଦ ଯୋଜନଯାଏ ।
ପାଞ୍ଚ ଅଶୀକୋଟି ସହସ୍ର ଯୋଜନ ସେ ପୁରର ଦୀର୍ଘ ପ୍ରସ୍ତ ।
ଚନ୍ଦ୍ର ରଶ୍ମି ପ୍ରାପ୍ତ ଶୋଭା ପାଉଅଛି ଧବଳ ଫେନର ଜ୍ୟୋତି ।

କୋଟିଏ ଯୋଜନ ବିସ୍ତାର ତହିଁରେ ପଦ୍ମବନ ଦିଶେ ଶୋଭି ।
ଦଶ ସହସ୍ର ଯେ ପାଖୁଡ଼ା ଫୁଟେଇ ପଦ୍ମ ଗୋଟିକର ପ୍ରଭି ।
ଷାଠିଏ ସହସ୍ର ଲମ୍ବ ସେ ଅଟଇ ଏକ ପଦ୍ମନାଡ଼ ଗୋଟି ।
ସ୍ୱର୍ଗପୁର ଭେଦି ଅନମି ରହିଛି ପାତାଳବେଢ଼ି କୁଣ୍ଡ ଭେଟି ।
ଅବସନ୍ତରେ ଯେ ବସନ୍ତ ବହଇ ଶିଶିରେ ନୁହଇ ଷପେ ।
ସୁଗନ୍ଧ ଶୀତଳ ବାୟୁ ଅମୋଦଇ ଚଉଦଭୁବନ ଯାଏ ।
ସେହି ପଦ୍ମବନ ଭିତରୁ ପୂର୍ବେଣ ଲକ୍ଷ୍ମୀଦେବୀ ହେଲେ ଜାତ ।
କମଳିନୀ ନାମ ତେଣୁ ସେ ପାଇଲେ ତିନିଜଗତେ ବିଖ୍ୟାତ ।
ସେହି ପଦ୍ମବନ ଭିତରେ ଅଛନ୍ତି ଅଷ୍ଟକୁଳାନାମେ ଅହି ।
ମନ ପବନକୁ ଦୃଢ଼ତର କରି ପ୍ରଭୁଙ୍କୁ ପୃଷ୍ଠରେ ବହି ।
ଜନ୍ମ ମୃତ୍ୟୁ ନାହିଁ ପାଦପଦ୍ମ ସେବି ଅଟନ୍ତି ପରମ ଯୋଗୀ ।
କ୍ଷୁଧା ତୃଷା ନିଦ୍ରା ତିନି ବିବର୍ଜିତ ମହାପୁଣ୍ୟମୟ ଭୋଗୀ ।
ବତିଶସହସ୍ର ଯୋଜନ ଅଟଇ ସେମହାସର୍ପର ପିଠି ।
ମୁଖ ବିସ୍ତାରିଲେ କ୍ଷଣକେ ଭିତରେ ବ୍ରହ୍ମାଣ୍ଡ ପାରଇ ଘୋଟି ।
ସେ ମହାଧବଳ ସମୁଦ୍ରକୁ ଲାଗି ପଦ୍ମବନ ଅଛି ରହି ।
ପଦ୍ମମାନଙ୍କର ଉପରେ ଅଛନ୍ତି ଅଷ୍ଟକୁଳ ନାମେ ଅହି ।
ନୀଳ ଶୁକ୍ଳ ପାଣ୍ଡୁ ହରିତାଳଦ୍ୟୁତି ପ୍ରାୟେ ଅଟେ ତାଙ୍କ ବର୍ଣ୍ଣ ।
ପୀତବର୍ଣ୍ଣ କୃଷ୍ଣ ପାଟଳ ହିଙ୍ଗୁଳ ଅଷ୍ଟକୁଳ ଶୋଭମାନ ।
ସେମାନଙ୍କ ତଳେ ସୁରେକ ନିର୍ମାଣ ବଚତନ ନୁହଇ କହି ।
ପାଦପଦ୍ମ ଦେଖି ପଙ୍କଜ ହେବାରୁ ଭକତେ ଅଛନ୍ତି ବହି ।
ତୁମ୍ଭେ ଅବା ବୋଲି କଲା ପଙ୍କ ବୋଲି ଟେକଇ କେମନ୍ତେ ଦ୍ରବ୍ୟ
ସେକଥା ତୁମ୍ଭଙ୍କୁ ବୁଝାଇ କହିବା ଶୁଣ ଗୋପାଙ୍ଗନା ସର୍ବ ।
ଭକ୍ତବନ୍ଧୁଙ୍କର ପଙ୍କଜ ରୂପକୁ ଭକତେ ଅଛନ୍ତି ଧରି ।
ତାହାରୁ ଅଧିକ ଏକପୁର ନାହିଁ ଶୁଣ ଗୋପାଳଙ୍କ ନାରୀ ।
ଆପଣ୍ଡାର ଯଶ ଭକତଙ୍କୁ ଦେଲେ ଭେଦାଭେଦ ନାହିଁ କିଛି ।
ଜୀବ ଆତ୍ମା ଦୁଇ ଭିନ୍ନାଭିନ୍ନ ନାହିଁ ନିର୍ବେଦ ହୋଇଣ ଅଛି ।
ଏମନ୍ତ ବଚନ ଗୋପୀମାନେ ଶୁଣି ସାନନ୍ଦରେ ମଗ୍ନ ହେଲେ ।

ନାସ୍ତରିଲେଁ ବୋଲି ବେଦଙ୍କର ଯୋଡ଼ି ଉଦ୍ଧବପାବେ ଲେଖିଲେ
ଗୋପିଏ ବୋଇଲେ, ଶୁଣ ହେଉଦ୍ଧବ ! ନାଶିଲ ଜନ୍ମର ଖେଦ
ତୁମ୍ଭେ ଏହି କଥା କେମନ୍ତେ ଜାଣିଲ ସପତ ପାତାଳ ଭେଦ !
ଉଦ୍ଧବ ବୋଇଲେ, ଏ ଜାଦନେ ଆମ୍ଭେ ପ୍ରଭୁଙ୍କ ସଙ୍ଗରେ ଥିଲୁଁ ।
ସ୍ନାନ ନିତ୍ୟକର୍ମ ଭୋଜନ ସାରଣ ନଗର ଭ୍ରମଣେ ଗଲୁଁ ।
ମଣିମା ବୋଲିଣ ସମସ୍ତେ ଡାକନ୍ତି ସିଂହଦ୍ୱାରେ ଉଭା ହୋଇ
ପ୍ରଭୁ ପହଣ୍ଡିରେ ବିଜେ କଲାବେଳେ ସମର୍ପିଲେ ଭୁଜ ଦୁଇ ।
ତତେଷ ଭୟ କର ଶ୍ରୀଭୁଜଯୁଗଳ ସ୍ୱହସ୍ତେ ତୋଳି ଧଇଲି ।
ମୋଠାରୁ ଭକତ କେହି ନାହିଁ ବୋଲି ମନରେ ଗର୍ବ ବହିଲି ।
ଆପଣା ମନରେ ଏମନ୍ତ ବାଞ୍ଛିଲି କେହି ମୋତେ ନୋହେ ସରି
ବଯ୍ୟା ନ ଥିଲେ କ ଭୁଜ ସମର୍ପନ୍ତେ ବ୍ରହ୍ମାଣ୍ଡ ଠାକୁର ହରି !
ଧନ୍ୟ ମୋ ଜୀବନ ଏତେ ବଡ଼ ପୁଣ୍ୟ ପ୍ରଭୁଙ୍କ କର ବହିଲି ।
ଭକ୍ତଙ୍କର ଶ୍ରେଷ୍ଠ ନୋହିଲେ କେମନ୍ତେ ଶ୍ରୀଭୁଜ ଭାର ସହିଲି ।
ମୋର ମନକଥା ହୃଦୟ ମଧ୍ୟରେ ଜାଣିଲେ ଶାରଙ୍ଗଧର ।
ଅନ୍ତର୍ଯାମୀ ନାଥ ମନକଥା ଜାଣି ସ୍କନ୍ଧୁ କାଢ଼ି ନେଲେ କର ।
ଶ୍ରୀକୃଷ୍ଣ ବୋଇଲେ, ଶୁଣ ହେ ଉଦ୍ଧବ ! ମନରେ ଗରବ କଲୁ
ଅଳ୍ପ କଥାକୁ ତୁ ମନେ ଗର୍ବ ରଖି ହୃଦରେ କିଛି ନ ଭାଳୁ ।
ଏ ଭୁଜ ମହିମା ଯେମନ୍ତେ ଅଛଇ ତୁମ୍ଭେ ତ ତାହା ନ ଜାଣ ।
ଗୁରୁକୁ ଗୁରୁତ୍ୱ ଲଘୁକୁ ଲଘୁତ୍ୱ ଭୁଜର ଏମନ୍ତ ଗୁଣ ।
ତୁମ୍ଭେ ଯେ କହିଲ ମୁଁ ବଡ଼ ନୋହିଲେ ଭୁଜ ବହି ନ ପାରନ୍ତ
ତୁମ୍ଭଠାରୁ ମୋର କେତେକ ଭକତ ମହୀମଣ୍ଡଳେ ଅଛନ୍ତି ।
ତାହାଙ୍କ ମହିମା ନ ଜାଣଇ ବ୍ରହ୍ମା ବଚନେ କୁହଇ କାହ୍ନ ।
ଅଶେଷ ବ୍ରହ୍ମାଣ୍ଡ ମୋତେ ଆଶ୍ରାକରି ସମସ୍ତେ ଅଛନ୍ତି ରହି ।
ଭକ୍ତଙ୍କର ବନ୍ଧୁ ବାତ୍ସଲ୍ୟ ସିନ୍ଧୁ ଅନୁଗ୍ରହ କଲେ ଯେଣୁ ।
ସେ ଧନ ଶ୍ରୀକୃଷ୍ଣ ମୋତେ ତାଙ୍କ କର ବିସ୍ତାର କହନ୍ତେ ତେଣୁ
ଉଦ୍ଧବ ବୋଇଲେ, ଶୁଣ ଗୋପନାରି ! ପ୍ରଭୁଙ୍କ ଭକତ ଗୁଣ
ତୁମ୍ଭେ ଯେଉଁ କଥା ମୋତେ ପଚାରିଲ ବିସ୍ତାରି କହିଲି ଜାଣ ।

ଗୋପୀଏ ବୋଇଲେ, ଶ୍ରୀକୃଷ୍ଣ ଚରିତ ଯେତେକ କହିଲ ତୁମ୍ଭେ
କୋଟିଏ ଜନ୍ମର ପାପ କ୍ଷୟ ଗଲା ନିସ୍ତାର ପାଇଲୁଁ ଆମ୍ଭେ ।।
ଯେତେ କଥା ତୁମ୍ଭେ ବିସ୍ତାରି କହିଲ ସବୁ ପୁରାଣ ଭକତ ।
ଅତି ଅଗୋଚର ମହିମା ଦୁର୍ଲଭ ଶୁଣି ହୋଇଲୁଁ ମୁକତ ।।
ତୁମ୍ଭ ବାକ୍ୟ ଶୁଣି ଆମ୍ଭେମାନେ ଗୁଣି ଫିଟିଲା ମନୁ ସନ୍ଦେହ ।
କେତେଦିନେ ଏବେ ଶ୍ରୀକୃଷ୍ଣ ଆସିବେ ସେ କଥା ଆମ୍ଭଙ୍କୁ କହ ।।
ଉଦ୍ଧବ ବୋଇଲେ, ଶୁଣ ଗୋପନାରୀ ! ଆମ୍ଭଙ୍କୁ କହିଲ ଯାହା ।।
ବିଶ୍ୱ ମାୟାଧର ମହିମା ଅପାର କେମନ୍ତେ ଜାଣିବା ତାହା ।।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ସବୁଠାରେ ଛନ୍ତି ପୂରି ।
ମନ ମଧ୍ୟେ ତାଙ୍କୁ ସର୍ବଦା ଭାବିଲେ ପ୍ରସନ୍ନ ହୁଅନ୍ତି ହରି ।।
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ବଚ୍ଚର କପଟ ନ କର
କଅଁଳା ପୁଅକୁ କ୍ଷୀର ନ ଦେଇଣ ଚୁମ୍ବିଲେ ଯଥା କୁମର ।।
ସେହିମତ ସିନା ଆମ୍ଭର ମନକୁ ନିରାଶ କରନ୍ତି ସେହି ।
ନିଦାନ ମନ୍ତ୍ରକୁ ଦିଅ ଦିଅ ତୁମ୍ଭେ ଏଣେ ଦୁଷ୍ଟପଣ ନୋହି ।।
ଏ ତୁମ୍ଭର ବାଣୀ ସୁଧାରସ ପରି କେତେହେଁ ଶୁଣିମା ଛଟା ।।
ବେଦ ଶାସ୍ତ୍ର ପ୍ରାୟେ ଲକ୍ଷ୍ଣେ କହିଲେ ଆମ୍ଭଙ୍କ ମାଡ଼ିବ ଚଟା ।।
ଉଦ୍ଧବ କହିଲେ, ଶୁଣ ଗୋପନାରି ! ନ ଜାଣି କହିଲ ମତ ।
ବ୍ରହ୍ମା ନ ଥିଲେ ଯେ ସଂସାର ନ ଥାନ୍ତା ବେଦକୁ କପାଇ ନିନ୍ଦ
ବ୍ରହ୍ମା ବିଷ୍ଣୁ ରୁଦ୍ର, ଏ ତିନି ଦେବତା ଅନାଦି ପାର୍ଥିରୁ ଖରି ।
ତାହାଙ୍କୁ କେମନ୍ତେ ନିନ୍ଦା କରୁଅଛ ତୁମ୍ଭେ ବୋଲିବାକୁ ଡରି ।।
ବିଧାତା ରଚନା ସମସ୍ତ ଚରିତ ତା ବିନୁ ସଂସାରେ କାହିଁ ।
ତୁମ୍ଭ ମୁଖରୁ ଯେ ଏମନ୍ତ ଶୁଣିଲୁଁ କେ ଅବା ନିନ୍ଦିବ ନାହିଁ ।।
ଦେବତାଙ୍କ ଭ୍ରାତା ଈଶ୍ୱର ଅଟନ୍ତି ସେହି କି ହୋଇଲେ ସାନ ।
ମାତୃଦ୍ରୋହ କରି ମହାଦୋଷ ଲଭି ସାଧିଲେ ସେ ବ୍ରହ୍ମଜ୍ଞାନ ।।
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ଅନ୍ୟେ ଆମ୍ଭ କାର୍ଯ୍ୟ ନାହିଁ
ଈଶ୍ୱର କେମନ୍ତେ ମାତା ଦ୍ରୋହୀ ହେଲେ ସେକଥା କହ ଗୋସାଇଁ
ଦେବଙ୍କ ଉପରେ ମହାଦେବ ନାମ ଜଗତେ ହୁଏ ବିଖ୍ୟାତ ।।

ଏତେ ପ୍ରଭୁ ହୋଇ ମଦନକର୍ମ କମ୍ପା କଲେ ପାର୍ବତୀନାଥ ।
ଉଦ୍ଧବ ବୋଇଲେ ଶୁଣ ଗୋପନାରି ! ବ୍ରହ୍ମପୁରାଣର କଥା ।
କାହାରଠାରେ ମୁଁ ବ୍ୟାଖ୍ୟା କରନାହିଁ ଏ ମହାଗୁପତ ବାର୍ତ୍ତା ।
ତୁମ୍ଭେ ଯେବେ କଥା ସଂକ୍ଷେପେ ଶୁଣିବ କହିବା ତହିଁର ବାଣୀ
ପୁରାଣ ପ୍ରମାଣେ ତୁମ୍ଭଙ୍କୁ କହିବୁ ଯେତେଦୂର ଆମ୍ଭେ ଜାଣି ।
କ୍ଷିତି ଜଳପବନ ପ୍ରଳୟ ହୋଇ ଯେ ବଜ୍ରାଶିଲା ଶୂନ୍ୟମୟ ।
ସଚରାଚର ଜୀବଜନ୍ତୁ ଯେତେକ ସମସ୍ତ ହୋଇଲେ କ୍ଷୟ ।
ଏକମାତ୍ର ପ୍ରଭୁ ଅନାଦି ରହିଲେ ଅନ୍ନପୂର୍ଣ୍ଣା ସଙ୍ଗତରେ ।
ବିବିଧ ପ୍ରକାରେ ବିହାର କଲେ ସେ ପୀଡ଼ା ପାଇ ପଞ୍ଚଶରେ ।
ତାଙ୍କ ଅଙ୍ଗୁ ରେତ ହୁଅନ୍ତେ ସ୍ଖଳିତ କରେ ତାକୁ ତୋଳି ଧରି ।
ନଖଅଗ୍ରେ ତିନଗାର କାଟିଦେଲେ ଗାୟତ୍ରି ମନ୍ତ୍ର ଉଚ୍ଚାରି ।
ବ୍ରହ୍ମାର ଗାୟତ୍ରୀ ବିଷ୍ଣୁର ଗାୟତ୍ରୀ ଶିବର ଗାୟତ୍ରୀ ଘେନି ।
ମନ୍ତ୍ର ଆରୋପିଣ ଦୟା କରି ତହିଁ ଜାତ କଲେ ପୁତ୍ର ତିନି ।
ବ୍ରହ୍ମାଙ୍କୁ ବୋଇଲେ ତୁ ଯାଇ ହୋଇବୁ ଜଗତଜନଙ୍କ ପିତା ।
ବିଷ୍ଣୁଙ୍କୁ ବୋଇଲେ ତୁମ୍ଭଙ୍କୁ ଲାଗଇ ବ୍ରହ୍ମାଣ୍ଡ ପାଳିବା ଚିନ୍ତା ।
ଈଶ୍ୱର ବୋଲିଣ ଯେଉଁ ପୁତ୍ର ଗୋଟି ବେଧାରେ ଅଛଇ ସାନ ।
ମାତାଙ୍କ ସହିତ କୁକାର୍ଯ୍ୟେ ମାତିଲେ ପଞ୍ଚମୁଖ ତ୍ରିଲୋଚନ ।
ଏହିମତେ କେତେ ଯୁଗ ବହିଗଲା କାନ୍ତି ନ କଲେ ଶଙ୍କର ।
ଜଗତର ମୁଖେ ନିନ୍ଦାବାଣୀ ଶୁଣି ସେ କଥା ଛାଡ଼ିଲେ ହର ।
ମାତା ମୁଖ ଚାହିଁ ବିଷ୍ଣୁ କୋପ କରି କହିଲେ ଅନାଦି ରାମା ।
ଏଡ଼େ ପ୍ରଭୁଙ୍କର ନାରୀ ହୋଇ ତୁମ୍ଭେ ହୋଇଲ ବିଟପୀ ବାମା ।
ବାଳକ ସ୍ୱଭାବ ଅଟଇ ଶିବଙ୍କର ତୁମ୍ଭେ ଅଟ ମହାଜ୍ଞାନୀ ।
ମାତା ହୋଇ ପୁତ୍ରେ ନିଷେଧ ନକଲ ଧିକ ତୁମ୍ଭଙ୍କୁ ଜନନୀ ।
ବିଷ୍ଣୁଙ୍କ ବଚନେ ଆଦ୍ୟମାତା ବୋଲେ ଶୁଣ ହେ ବାଳକଶିଷ ।
ପ୍ରାଣୀମାନଙ୍କର ପ୍ରକୃତି ଚଞ୍ଚଳ ତହିଁକି କରିବା କିସ ।
ତୁ ଆମ୍ଭ ନନ୍ଦନ ସୁବୁଦ୍ଧି ସୁଜ୍ଞାନ ବିଦ୍ୟାନିଧି ଦିବ୍ୟଚକ୍ଷୁ ।
ମୋହର ପ୍ରକୃତି ମୋତେ ବଳାଇଲା ମୋତେ ତୁ କପାଇଁ ବାଛୁ ।

ମୋତେତୁବୃଥାରେ ନିନ୍ଦାକଲୁ ଯେବେତୋତେପଡ଼ୁ ମୋରଶାପ
ଶତେ ଜନ୍ମଯାଏ ପ୍ରସବ ପଥରେ ଜନ୍ମି ଲଭ ଶୋକ ତାପ ।
ଏତେ ବୋଲି ମାତା ପଛକୁ ନ ଧୁଁ ତତକ୍ଷଣେ ଶାପ ଦେଲେ
କହୁଁ କହୁଁ ଦେବୀ ଉପ୍ରୋଧ ଗୁଡ଼ଣ ଅନ୍ତର୍ଦ୍ଧାନ ହୋଇଗଲେ ।
ଆଦ୍ୟମାତାଙ୍କର ଅନ୍ତର୍ଦ୍ଧାନ ଦେଖି ତାପ କଲେ ହୃଷୀକେଶ ।
ବ୍ରହ୍ମାଙ୍କୁ ବୋଇଲେ, ଆଉ କଥା ଥିବ ବୈକୁଣ୍ଠକୁ ଯିବା ଆସ ।
ଏତେ ବୋଲି ପ୍ରଭୁ ଜ୍ୟେଷ୍ଠଭ୍ରାତା ଧେନ ବିଜେକଲେ ପଦ୍ମଆଖି
ଈଶ୍ୱରଙ୍କ ମୁଖ କ୍ଷଣେ ନ ଚାହିଁଲେ ଅଲଙ୍ଘିତ କର୍ମ ଦେଖି ।
ଦେବାଧିଦେବଙ୍କୁ ଠାକୁର ବୋଲିଣ ଏତେ ହୀନ କର୍ମ କଲ ।
ଧିକ ହେଉ ତୁମ୍ଭ ଈଶ୍ୱରର ପଣ ପୋଡିଯାଉ ଦୀର୍ଘ ବଳ ।
ଆମ୍ଭେ ଦେଖିଲୁ ତୋ ମୁଖ ନ ଚାହିଁ ଯାଉଅଛୁଁ ସ୍ୱର୍ଗପୁର ।
ତୁ ଏବେ କାହାର ମୁଖ ନ ଚାହିଁବୁ ଅଗ୍ନି ଜାଳି ପଛେ ମର ।
ବ୍ରହ୍ମାଙ୍କର ବାଣୀ ସଦାଶିବ ଶୁଣି ଫେଡ଼ି ନ କହିଲେ କଥା ।
ଅନ୍ତର୍ଗତେ ପୁଣି ଦେବ ଶିରୋମଣି ପାଇଲେ ବହୁତ ବ୍ୟଥା ।
ଈଶ୍ୱର ବୋଇଲେ ଅନେକ ଧିକାର କଲେ ମୋତେ ଅଷ୍ଟଚକ୍ଷୁ ।
ତାହାଙ୍କୁ ବୋଇଲେ ଆଉ କିସ ହେବ ଆମ୍ଭେ ଯାହା ଅର୍ଜିଅଛୁ ।
ଏତେ ବୋଲି ପୁଣି ଅମରପୁରକୁ ବିଜେକଲେ କାଶୀବାସୀ ।
ଦେଖିଲେ ସ୍ୱର୍ଗରେ ସୁଧର୍ମା ସଭାରେ ଦେବଗଣେ ଛନ୍ତି ବସି ।
ଈଶ୍ୱରଙ୍କୁ ଚାହିଁ ହେଠମାଥ ହୋଇ ରହିଲେ ଦେବତାବୃନ୍ଦ ।
ବୋଇଲେ ଏ ପାପୀ ମୁଖ ନ ଚାହିଁବା ମାତାଙ୍କୁ କରିଛନ୍ତି ମନ୍ଦ ।
ହରି ହରି ବୋଲି ଗୋବିନ୍ଦ ସୁମରି ଧର୍ମକୁ କରନ୍ତି ସାକ୍ଷୀ ।
ଏକକୁ ଅନେକ ମୌନବ୍ରତ ହୋଇ ସମସ୍ତେ ବୁଜିଲେ ଆଖି ।
ଦେବତାଙ୍କ ଗତି ଦେଖି ପଶୁପତି ଚଳିଲେ ମଉନଭାବେ ।
ବୋଇଲେ, ଏ ଲାଜ ମରଣୁ ବଳିଲା କି ବୁଦ୍ଧି କରିବି ଏବେ ।
ଧର୍ମ ପୁରାଣକୁ ବିଚାର କରନ୍ତେ ସଂସାର ନିନ୍ଦାରେ ମଲୁଁ ।
ଈଶ୍ୱର ବୋଇଲେ କାହିଁଅଛୁ ପାର ଅତିହିଁ ଅନୀତି କଲୁଁ ।
ଏହି ତିନିପୁର ମଧ୍ୟରେ ଆମ୍ଭଙ୍କୁ ରଖିବାକୁ କେହି ନାହିଁ ।

ଏକମାତ୍ର ପ୍ରଭୁ ଅନାଦ୍ଧ ଅନନ୍ତ ତାହାଙ୍କୁ କହିବ ଯାଇଁ ।
ସେ ଗୋପୀମାନଙ୍କ ମାନ ଉଦ୍ଧାରଣ ବକଚପଙ୍କଜ ଡୋଳା ।
କୁରତନାଶନ ତାହାଙ୍କ ମହିମା ଭବ ଜଳଧିକ ଭେଳା ।
ଅଶେଷ ବ୍ରହ୍ମାଣ୍ଡ ଜୀବ ଅଧିପତି ଅଣାକାର ଜ୍ଞାନମୟ ।
ସେ ଅବା ବୋଲିବେ ପ୍ରାୟଶ୍ଚିତ କଲେ ପାତକ ହୋଇବକ୍ଷୟ ।
ଏତେ ବୋଲି କଶୀବାସୀ ବୃଷେ ବସି ପ୍ରଭୁଙ୍କ ସ୍ଥମୁକୁ ଗଲେ ।
ଖଣ୍ଡେଦୂରେ ଥାଇ ବେନି କର ଯୋଡ଼ି ଦଣ୍ଡ ପ୍ରଣାମ ବହିଲେ
ମହାଦେବଙ୍କର ଭକତି ଦେଖିଣ ଆଜ୍ଞା ଦେଲେ ଜଗଦୀଶ ।
ଆମ୍ଭର କଲ୍ୟାଣ ପ୍ରାପ୍ତ ହେଉ ତୋତେ ଉଠ ଉଠ ହେ ମହେଶ
ଈଶ୍ୱର ବୋଇଲେ, ଶୁଣିମା ଅନାଦ୍ଧ ! ତୁମ୍ଭର ସଖିତ ଯେବେ ।
ମା ତାଙ୍କୁ ହରଣ ମହାପାପୀ ହେଲି ଦୟା କର ପ୍ରଭୋ ! ଏବେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦ୍ଧ ତୁମ୍ଭେ ସେ ସବୁର ଈଶ ।
ତେଣୁକର ପ୍ରଭୋ ଗୁହାରି କରୁଛି ଅଧିକ କହିବି କିସ ।
ଈଶ୍ୱର ବଚନେ ଅନାଦ୍ଧ ବୋଇଲେ ଶୁଣ ତୁମ୍ଭେ ସଦାଶିବ ।
ଅଜ୍ଞାନେ ତୁମ୍ଭେ ଯେ ପାପକୁ ଅର୍ଜିଲ ପୁରାଣ ଶୁଣିଲେ ଯିବ ।
ଶ୍ରୀମହାପୁରାଣ ଗ୍ରନ୍ଥକୁ ଶୁଣିଲେ ଏ ପାପ ହୋଇବ ବହି ।
ଯେମନ୍ତ ପାପକୁ ଯେଉଁ ପ୍ରାୟଶ୍ଚିତ ତାହା ଦେବା ତୋତେକହି।
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ବ୍ରହ୍ମହତ୍ୟା ଯେହୁ କରେ
କୋଟି ଅଶ୍ୱମେଧଯାଗ ପୂର୍ଣ୍ଣକଲେ ତେବେ ସେ ପାପରୁ ତରେ
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ମଦ୍ୟ ଯେଉଁ ଲୋକଖାଏ
ଗଙ୍ଗାସାଗରରେ ଝାସଇ ସେ ଯେବେ ତେବେ ସେପାତକଯାଏ
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱରଗୋହତ୍ୟାକରନ୍ତିଯେବେ
କୋଟିଏ ଗୋଧେନୁ ଦାନକଲେ ଶ୍ରେ ସେ ପାପଗୁଡ଼ଇତେବେ
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ! ଗର୍ଭନଷ୍ଟ ଯେ କରଇ
ଜଳଦାନ ଦେଲେ ସେ ପାପୁଁ ଉଦ୍ଧରେ ଶୁଣ ତୁମ୍ଭେମନ ଦେଇ।
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ! ଗର୍ଭନଷ୍ଟ ଯେ କରଇ ।
ବସ୍ତୁ ପ୍ରୀତିଅର୍ଥେ ଧର୍ମ ଆଚରିଲେ ତେବେ ସେ ପାପୁଁ ତରଇ ।

ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ! ଯେହ୍ନୁ ଶିଶୁ ପ୍ରାଣହତେ
ସେ ମହାପାପରୁ ମୁକତ ହୁଅଇ ପ୍ରାଣୀଙ୍କି ଯେବେ ନିସ୍ତାରେ ।
ଅନାଦ୍ଧ ବୋଇଲେ ଶୁଣ ହେ ଈଶ୍ୱର ! ଋଣ ନ ସୁଝିବ ଯେବେ
ଶିରକୁ କାଟିଣ ଅନଳେ ଝାସିଲେ ସେ ପାପ ଛୁଡ଼ଇ ତେବେ ॥
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ମିତଘାରେଦ୍ରୋହୀହେଲେ
ମକର ମାସରେ ନିତ୍ୟସ୍ନାନ କଲେ ସେ ପାପ ଛୁଡ଼ଇ ଭଲେ ।
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ମହାବନ୍ଧନ ଯେ କାଟି ।
ଜଳଦାନ କର ଧର୍ମ ଆଚରିଲେ ହୁଅଇ ସେ ପାପ ତୁଟି ।
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ! ଗୁପତ ଦିବ୍ୟ ବଚନ ।
ମାତୃହରଣ ମହାପାପ ଛୁଡ଼ଇ ସାଧିଲେ ଯେ ବ୍ରହ୍ମଜ୍ଞାନ ।
ଅନାଦ୍ଧ ବଚନେ ଈଶ୍ୱର ବୋଇଲେ, ଶୁଣିମା ତ୍ରିଦଶ ସାଇଁ ।
ଅତି ଦୁସ୍ତର ଯେ ଏହି ବ୍ରହ୍ମଜ୍ଞାନ କେମନ୍ତେ ସାଧିବି ମୁହିଁ ।
କେମନ୍ତେ ଆସନ କେଉଁ ମନ୍ତ୍ରେ ଧ୍ୟାନ କେମନ୍ତେ କାହାକୁ ପୂଜା
ତୁମ୍ଭେ ମହାଗୁରୁ ମୁଁ ତୁମ୍ଭର ଶିଷ୍ୟ କହନ୍ତୁ ଦେବାଧିରାଜା ।
ସୁର ନର ବ୍ରହ୍ମା ଏମାନେ ସେବିଲେ ଯେଉଁ ପାଦପଦ୍ମ ଦୁଇ ।
ତୁମ୍ଭ ବିନୁ ମୋର ଅନ୍ୟ କେହି ନାହିଁ ପାରିଲେ ରଖ ଗୋସାଇଁ ।
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ! ବ୍ରତ ଯେବେ ବହିବୁ
ମହାବ୍ରହ୍ମଜ୍ଞାନ ଉପଦେଶ ଦେଇ କର୍ଣ୍ଣମାର୍ଗରେ କହିବୁଁ ।
ଏମନ୍ତ ବୋଲିଣ ଅନାଦ୍ଧ ପୁରୁଷ ମୁଦଳ ବାଞ୍ଛା କରିଲେ ।
ଈଶ୍ୱରଙ୍କ କର୍ଣ୍ଣେ ମନ୍ତ୍ର ଉଚ୍ଚାରଣ ପରମଦୀକ୍ଷାକୁ ଦେଲେ ।
ଅନାଦ୍ଧ ବୋଇଲେ, ଶୁଣ ହେ ଈଶ୍ୱର ପବିତ୍ର ହୋଇଲା କର୍ଣ୍ଣ ।
ଗୁରୁଙ୍କ ଦର୍ଶନେ ପାପ ନାଶଗଲା ଏବେ ସାଧ ବ୍ରହ୍ମଜ୍ଞାନ ॥
ମୂଳର କମଳ ଚାରି ପାଖୁଡ଼ା ଯେ ମେଘନାଦେଲ ମନ ଭେଲା ।
ନାସା ବାୟୁ ରୁଦ୍ର ତ୍ରିବେଣୀ ସ୍ଥାନରେ ତହିଁଠେ ରହେ ଅଙ୍ଗୁଳା
ତରଳ କମଳ ଛଗୋଟି ପାଖୁଡ଼ା କହିବା ତହିଁର ଗତି ।
ଶକୁନଙ୍କି ଯେନ ଆସନେ ବସିଛନ୍ତି ଚତୁର୍ଭୁଜ ଗଣପତି ।
ତାହାର ତଳରେ ଅଷ୍ଟ ଯ ପାଖୁଡ଼ା ଲିଙ୍ଗ କମଳର ସାନ ।

ଏହା ହେତୁକର ବୋଲିଣ ବୋଇଲେ ବେବତାଙ୍କ ବେବରାଜ
ନାଭିରେ କମଳ ଅଟେ ବଶଦଳ ବ୍ରହ୍ମା ସାବିତ୍ରୀଙ୍କ ସ୍ଥାନ ।
ହୃଦରେ କମଳ ଦ୍ୱାଦଶ ପାଖୁଡ଼ା ଲକ୍ଷ୍ମୀ ଧେନ ଭଗବାନ ॥
ତାହାର ତଳରେ ଷୋଡ଼ଶ ପାଖୁଡ଼ା କଣ୍ଠ କମଳରେ ସ୍ଥିତ ।
ନୀଳକଣ୍ଠେଶ୍ୱର ପାର୍ବତୀଙ୍କୁ ଧେନ ପରମ ସାନନ୍ଦ ମତ ॥
ତହିଁ ନାଳ ବେନ ହଂସ ଅଛି ଘେନ ବଚନେ କୁହଇ କହ ।
ସିଦ୍ଧି ବୋଲି କହ ଏ ବେନ ଅକ୍ଷର ଶୂନ୍ୟରେ ଅଛନ୍ତି ରହ ॥
ପୁରେ ପୁରେ ପଶି ଖୋଜ ଏମାନଙ୍କୁ ପୂଜା ଆସନରେ ବସି ।
ମନ ନୌତନକୁ ଦୃଢ଼ତର କର ପଶ୍ଚିମ ଦ୍ୱାରର ପଶି ॥
ସହସ୍ର କମଳଦଳ ଅଛି ଯହିଁ ତହିଁ ଯୋଗ କର ଲୟ ।
ଆପଣାର ଠାରେ ଆପଣକୁ ଦେଖ ପୂର୍ଣ୍ଣାନନ୍ଦ ଜ୍ୟୋତିର୍ମୟ ॥
ଉତ୍ତାନ୍ତା ପକ୍ଷୀକୁ ଧର ନ ପାରିବ ଜନ୍ତୁ ନ କରିବ ବଧ ।
ମାତ୍ରୁ ଦ୍ରୋହରୂପ ପାପ ନାଶ ଯିବ ଏହ ପ୍ରକାରରେ ସାଧ ॥
ଏମନ୍ତ ତାହାଙ୍କୁ ଜ୍ଞାନପଥ କହ ପ୍ରଭୁ ହେଲେ ଅନ୍ତର୍ଦ୍ଧାନ ।
ଗଙ୍ଗାର କୂଳକୁ ଯାଇ ବିଶ୍ୱନାଥ ଗୁରୁଙ୍କୁ କଲେ ଦର୍ଶନ ॥
ଅନାଦି ପଞ୍ଚମ ଇନ୍ଦ୍ରିୟ ନିରୋଧି ମନ୍ତ୍ରସିଦ୍ଧି କଲେ ଯେଣୁ ।
ଜ୍ଞାନ ଅନଳରେ ପାପକୁ ବହଣ ମୁକତି ଲଭିଲେ ତେଣୁ ॥
ଉଦ୍ଧବ ବୋଇଲେ ଶୁଣ ଗୋପନାରି ! ଅନାଦିକହିଲେ ଯାହା ।
ଶିବ ଜ୍ଞାନମାର୍ଗ ଅମର ହୋଇଲେ ତୁମ୍ଭେ ହେତୁକର ତାହା ॥
ଜ୍ଞାନମାର୍ଗେ ସିଦ୍ଧ ହେଲେ ଦେବବୃନ୍ଦ ଏଥକୁ ନ କର ହେଳା ।
ବୈକୁଣ୍ଠ ପାବନ୍ତି ଦୂରିତ ବହନ ଅବଶ୍ୟେ ଦିଅନ୍ତି ଭେଳା ॥
ତୁମ୍ଭେ ଗୋପୀମାନେ ସ୍ଥିର କର ମନ ଆମ୍ଭେ ଯାଉଅଛୁଁ ଚଳି ।
ମଧୁ ବନେ ଯାଇ ଦର୍ଶନ କରିବୁଁ ଦୀନବନ୍ଧୁ ବନମାଳୀ ॥
ତୁମ୍ଭଙ୍କୁ ଦେଖିଣ ସୁଖୀ ମୁଁ ହୋଇଲି ଅଧିକ କହିବି କେତେ ।
ଭୃତ୍ୟର ଭୃତ୍ୟ ମୁଁ ଅଟେ ମହାପାପୀ ଦୟା କରିଥିବ ମୋତେ ॥
ଗୋପୀଏ ବୋଇଲେ, ଶୁଣ ହେ ଉଦ୍ଧବ ଆମ୍ଭେମାନେ ଅଟୁ ମନ୍ଦ
ଶ୍ରୀକୃଷ୍ଣଙ୍କ ଗୁଣ କେତେ ସୁମରିବା ଦିବା ନିଶି ନାହିଁ ନିଦ ॥

ଅମ୍ଭପାଇଁ ତୁମ୍ଭେ ପରିଶ୍ରମ କରି ପ୍ରଭୁଙ୍କୁ କହିବ ଯାଇଁ ।
ବୋଲିବ ତୁମ୍ଭଙ୍କୁ ଗୋପନାରୀମାନେ ବାରତା ଅଛନ୍ତି ଦେଇ ।
ଦୁର୍ଭାଗ୍ୟ ହୋଇ ଅମ୍ଭେ ଅପରାଧ କଲୁଁ ପ୍ରଭୁ ତା ନ କଲେ କ୍ଷମା ।
ଯାହା ଦେଖି ଯାଇଁ ମଥୁରା ରହିଲେ ନ ମାଡ଼ିଲେ ଗୋପସୀମା ।
ପ୍ରଭୁ ହୋଇ କିପାଁ ବିଚାର ନ କଲେ କେଉଁ ଦୋଷ ଆମ୍ଭେ କଲୁ
ତୁମ୍ଭେ ତ ଅମ୍ଭଙ୍କୁ ନିରାଶ ବହିଲ ବୃଥାରେ ଗଞ୍ଜି ହୋଇଲୁ ।
ଏ କଥା ତାହାଙ୍କୁ ପ୍ରବୋଧି କହିବ ବୁଝିବେ ସେହୁ ଯେମନ୍ତେ ।
ଯାହାଙ୍କୁ ପୋଷଇ ତାହାଙ୍କୁ ନାଶଇ ଅଛି କି ଶାସ୍ତ୍ରେ ଏମନ୍ତେ ।
ତାହାଙ୍କୁ କହିବ ଯେବେ ନ ଆସିବେ ତେବେ ଅମ୍ଭେମାନେ ଯିବୁଁ
ପାଦପଦ୍ମରେ ଦର୍ଶନ କରିଲେ ଅମ୍ଭେମାନେ ମୁକ୍ତ ହେବୁଁ ।
ଉଦ୍ଧବ କହିଲେ, ଶୁଣ ଗୋପନାରି ! ତୁମ୍ଭେ କହୁଅଛ ଯାହା
ତୁମ୍ଭମାନଙ୍କୁ ସେ ଅବଶ୍ୟ ଜାଣନ୍ତି ଅନ୍ତର୍ଯ୍ୟାମୀ ଚତୁର୍ବାହା ।
ଏବେ ତୁମ୍ଭେ ତାଙ୍କ ପାଦପଦ୍ମ ସେବା ଆମ୍ଭେ ଯେ ଗମନ କରୁଁ
ଅଭୟଚରଣ ସରୋଜ ଦର୍ଶନେ ଜନ୍ମର ଦୁରିତ ହରୁଁ ।
ଗୋପୀଙ୍କି ପ୍ରବୋଧି ଉଦ୍ଧବ ରଥରେ ମଥୁରା ହେଲେ ପ୍ରବେଶ ।
ଦୀନବନ୍ଧୁ ପଦେ ଶରଣ ମାଗିଣ ଭାବେ କହେ କୃଷ୍ଣ ଦାସ ।
ଅମୃତ-ପୟୋଧି ଶ୍ରୀକୃଷ୍ଣ ଚରିତ ତାହାକୁ ଉପମା ନାହିଁ ।
ଗୁଣାର୍ଣ୍ଣବ ବୋଲି ଯାହାଙ୍କ ମହିମା ବିଶେଷି କହିବା କାହିଁ ।
ଭକତଙ୍କ ହିତେ ମୋର ହୃଦଗତେ ପୁରାଣ ହୋଇଲା ଯାହା ।
ଶ୍ରୀଜଗନ୍ନାଥଙ୍କ କରୁଣା ନ ଥିଲେ ମୁଁ କାହୁଁ ବର୍ଣ୍ଣିବି ତାହା ।
ସେ ପ୍ରଭୁ ଅନ୍ଧୁଁ ମୋ ହୃଦେ ବିଜେକଲେ ପୂର୍ଣ୍ଣ ହେଲା ଏହି ପଦ
ସନ୍ଥଜନ ଆଗେ ସ୍ୱରୂପ କହିଲେ ବିଷୟୀ ବିଷକୁ ଗଦ ।
ସାଧୁଜନମାନେ ବିଚାର କରିଣ ଦୋଷ ନ ଧେନିବ ମୋର ।
ଦୀନକୃଷ୍ଣ ଦାସ ଭାବରେ ଭଣିଲେ ଶ୍ରୀକୃଷ୍ଣ ପଦେ କିଙ୍କର ।

ସମାପ୍ତ

ଓଡ଼ିଶା କୋହିନୁର ପ୍ରେସ, ଚୌଧୁରୀବଜାର କଟକରେ
ଏସ୍, ଅମିନୁଲ ଅହ୍‌ଙ୍କ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ । ୧୯୫୭

**ସୁବର୍ଣ୍ଣ ସୁଯୋଗ ହରାନ୍ତୁନାହିଁ ! ହରାନ୍ତୁନାହିଁ !! ହରାନ୍ତୁ ନାହିଁ !!!**

ଗୋହତ୍ୟା, ବ୍ରହ୍ମହତ୍ୟା, ମାତୃହରଣ, ସୁରା ( ମଦ୍ୟ ) ପାନ ଓ ବୃଷଳୀ ଗମନ ଆଦି ପଞ୍ଚ ମହାପାତକ ଦୋଷରୁ ମୁକ୍ତ ପାଇବାକୁ ଥିଲେ ପୁରୀ ଶ୍ରୀ ଜଗନ୍ନାଥଧାମ ମହୋଦଧିରେ

**ମହା୨ ପାତକନାଶିନୀଗୋବିନ୍ଦଦ୍ୱାଦଶୀ ସ୍ନାନକରନ୍ତୁ**

ଏ ସୁବର୍ଣ୍ଣ ସୁଯୋଗ ହରାଇଲେ ଆଉ ସାରା ଜୀବନରେ ପାଇ ପାରିବେ ନାହିଁ । ହଜାର ବର୍ଷ ତଳେ ଏ ଯୋଗ ପଡ଼ିଥିବାର ମଦଳା ପାଞ୍ଜିରୁ ମିଳେ । ପୁଣି ହଜାର ବର୍ଷ ପରେ ଏ ଯୋଗ ଘଟିବା ଅସମ୍ଭବ । ସନ ୧୯୬୧ ଫେବୃୟାରୀ ତା୨୭ ରିଖ ସୋମବାର ସୂର୍ଯ୍ୟୋଦୟଠାରୁ ଦିବା ଘ° ୨।୮ ମିନିଟ ପର୍ଯ୍ୟନ୍ତ ଶ୍ରୀପୁରୁଷୋତ୍ତମ ମହୋଦଧିରେ ଏହି ସ୍ନାନଯୋଗ ହେବ ଏ ଯୋଗ ମଧ୍ୟ (କଲିକତା) ଗଙ୍ଗା, (ଯାଜପୁର) ବୈତରଣୀରେ ହୁଏ । ସବୁଠାରୁ ପୁରୀ ଜଗନ୍ନାଥ ଧାମ ମହୋଦଧି ପ୍ରାଧାନ ପ୍ରମାଣଂ ଯଥା—କୁମ୍ଭସ୍ଥେ ଭାସ୍କରେ ରାଜନ୍, ମକରେ ଗୁରୌର ଶନି, ଦ୍ୱାଦଶୀ ଶୁକ୍ଳ ପକ୍ଷସ୍ୟ, ପୁଷ୍ୟର୍କ୍ଷେ ଜାୟତେ ଯଦି ଗୋବିନ୍ଦ ଦ୍ୱାଦଶୀ ମହାନ୍, ମହାପାତକ ନାଶିନୀ, ତସ୍ୟାଂ କୁର୍ବନ୍ତି ବିଧିସ୍ନାନଂ ଦୃଷ୍ଟ୍ୱା । ଶ୍ରୀପୁରୁଷୋତ୍ତମେ ।

କୁମ୍ଭ ରାଶିରେ ରବି, ମକର ରାଶିରେ ବୃହସ୍ପତି ଓ ଶନି ଥାଇ ଫାଲ୍‌ଗୁନ ଶୁକ୍ଳ ପକ୍ଷ ଦ୍ୱାଦଶୀ ତିଥିପ୍ରୟୁକ୍ତ ପୁଷ୍ୟା ନକ୍ଷତ୍ର- ହେଲେ ମହାପାତକ ନାଶିନୀ ଗୋବିନ୍ଦ ଦ୍ୱାଦଶୀ ସ୍ନାନଯୋଗ ହୁଏ । ଅନ୍ୟାନ୍ୟ ବର୍ଷରେ ଏପରି ସମସ୍ତ ଯୋଗ ଏକତ୍ର ହେଉ ନଥିବାରୁ କେବଳ ତିଥି ନକ୍ଷତ୍ରଯୋଗ୍ୟ ସାମାନ୍ୟ ଗୋବିନ୍ଦ ଦ୍ୱାଦଶୀ ସ୍ନାନ ହେଉ ଥିଲା । ଏବର୍ଷ ସମସ୍ତ ଯୋଗ ଏକତ୍ର ହେଉଥିବାରୁ ମହା ମହାପାତକ ନାଶିନୀ ଗୋବିନ୍ଦ ଦ୍ୱାଦଶୀ ସ୍ନାନଯୋଗ ହେଉଅଛି ।

ମହାପାପ ବିମୋଚନାର୍ଥେ ଆବାଳ ବୃଦ୍ଧ ବୃଦ୍ଧା, ତରୁଣ ତରୁଣୀ ସମସ୍ତଙ୍କର ସ୍ନାନ କର୍ତ୍ତବ୍ୟ ।